

# ପରୋପକାର

ଏହା ମାଖନପୁର ଗାଁର କଥା । ସେଇଟା ବହୁତ ବଡ଼ ଗାଁ । ଥରେ ଭୀଷଣ ଝଡ଼ରେ ଗାଁର ବହୁତ ଗୁଡ଼ିଏ ଘରଦ୍ୱାର ଭାଙ୍ଗିଛିଡ଼ି ଗଲା । ବିଶେଷତଃ ଗାଁ ଗୃହାଳି ପୁରା ଭୂଷୁଡ଼ି ପଡ଼ିଲା । ପୁଣି ହରିଜନ ପଲ୍ଲୀରେ କାହାରି ଜଣକର କୁଡ଼ିଆ ବି ଅଛୁଟ ରହିଲା ନାହିଁ ।

ରଘୁନାଥ ସେହି ଗାଁର ଜଣେ ଯୁବକ । ସେ ସହରରେ ରହି ପାଠ ପଢୁଥାଏ । ଛୁଟିରେ ଘରକୁ ଆସିଥାଏ । ଗୃହାଳି ଓ ହରିଜନ ପଲ୍ଲୀର ଅବସ୍ଥା ଦେଖି ତାକୁ ବହୁତ ଦୁଃଖ ଲାଗିଲା । ସେ ଗାଁର ଅନ୍ୟ କେତେଜଣ ଯୁବକଙ୍କୁ ଏକାଠି କରି ଗୃହାଳି କେମିତି ପୁରାପୁରି ଆଉଥରେ ତିଆରି ହେବ ଓ ହରିଜନମାନଙ୍କ ଘର ମରାମତି ହୋଇ ପାରିବ ସେ ପରାମର୍ଶ କଲା ।

ରଘୁନାଥ ଗ୍ରାମର ସ୍ୱଚ୍ଛଳ ଲୋକମାନଙ୍କ ଚାନ୍ଦା ପାଇଁ ନିବେଦନ କଲା । ରଘୁନାଥକୁ ସମସ୍ତେ ଭଲ ପିଲା ବୋଲି ଜାଣିଥିଲେ । ତେଣୁ ଯିଏ ଯେତିକି ପାରିଲା ବା ଦେବାକୁ ମନ କଲା, ସେତିକି ଦେଲା ।

ରଘୁନାଥର ଆଶା ଥାଏ, ଗାଁ ମହାଜନ ମହାନ୍ତି ମହାପାତ୍ରେ ସବୁଠୁଁ ବେଶି ଦେବେ । ଅବଶ୍ୟ ମହାନ୍ତିବାବୁ ଭୀଷଣ କୃପଣ ବୋଲି ସେ ଶୁଣିଥାଏ । ତଥାପି ସେ ଆଶା ଛାଡ଼ି ନଥାଏ ।

ସେ ଯାଇ ମହାନ୍ତିବାବୁଙ୍କୁ ନମସ୍କାର କରି କହିଲା, "ଆପଣ ଶୁଣିଥିବେ, ଆମେ ଯୁବକମାନେ କିଛି ଚାନ୍ଦା ଅସୁଲ କରି ଗୃହାଳି ଓ ହରିଜନ ପଲ୍ଲୀର ପୁନଃନିର୍ମାଣ ପାଇଁ ଚେଷ୍ଟା କରୁଛୁଁ । ଯେତିକି ଚାନ୍ଦା ମିଳିଲାଣି, ସେଥିରେ ଗୃହାଳି କାମ ଚାଲିବ । ତେବେ ହରିଜନ ପଲ୍ଲୀ ପାଇଁ ଆପଣଙ୍କର ଦ୍ୱାରସ୍ଥ ହେଉଛୁଁ ।"

ମହାନ୍ତିବାବୁ ସେକ୍ ଠୋକ୍ ଶୁଣାଇ ଦେଲେ, "ଦେବି ନାହିଁ ।"



"ନଦେବେ କାହିଁକି ଆଜ୍ଞା ?"

"ତମେ ତ ବେଶ ଟୋକା ହେ ! ମୋର ପଗ୍ରୂରିବା କଥା ମୁଁ ଦେବି କାହିଁକି ? ଓଲଟି ତମେ ମୋତେ ମୁଁ ନଦେବି କାହିଁକି ବୋଲି ପଚାରୁଛ ? ହରିଜନ ପଲ୍ଲୀର ଲୋକେ ତମକୁ ତାଙ୍କ ଘରଟିମାନ ମରାମତି କରିଦେବାକୁ କହୁଥିଲେ ? ଯାଅ, ଯାଅ ।" ମହୀବାବୁ ରୁକ୍ଷ ସ୍ୱରରେ କହିଲେ । ରଘୁନାଥ ଅପମାନ ଅନୁଭବ କଲା । ତଥାପି ଧୈର୍ଯ୍ୟ ଧରି କହିଲା, "ଆଜ୍ଞା, ଆମେ ଗାଁର ଓ ଲୋକଙ୍କର ସେବା କରୁଛୁଁ ବୋଲି ସମସ୍ତେ ଆମକୁ କେତେ ପ୍ରଶଂସା କରୁଛନ୍ତି । ଆପଣ ଏ ସତ୍‌କାର୍ଯ୍ୟରେ ସାହାଯ୍ୟ ଦେଲେ ଆପଣଙ୍କୁ ବି ଲୋକେ ପ୍ରଶଂସା କରିବେ !"

ମହୀବାବୁ କଲମ ଥୋଇ ଦେଇ ରଘୁନାଥ ମୁହଁକୁ କଟମଟ କରି ଅନାଇ କହିଲେ, "ବାବୁ, ତମେ ନୂଆ କରି ପ୍ରଶଂସା ପାଉଛ ସେ ତମକୁ ଭାରି ମିଠା ଲାଗୁଛି । ହେଇଟି ଦେଖ, ମୋ ଗୃହପଟେ ବର୍ତ୍ତମାନ ଯେଉଁ ପନ୍ଦର କୋଡ଼ିଏ ଲୋକ ବସିଛନ୍ତି, ଏମାନେ ସମସ୍ତେ ମୋଠୁଁ କରଜ ନେଲାବେଳେ ମୋତେ ପ୍ରଶଂସା କରନ୍ତି ଓ କରିବେ । ଏମାନଙ୍କ ଘାଡ଼ ଆହୁରି କେତେ ଅଛନ୍ତି । ତେଣୁ ମୋର ପ୍ରଶଂସା କେଉଁ ଅଭାବ ହୋଇଛି ଯେ ପ୍ରଶଂସା ପାଇଁ ହାଇଁ ପାଇଁ କରିବ ? ଯାଅ ।"

ମହୀବାବୁ କଲମ ଉଠାଇ ନେଇ ପୁଣି ହିସାବ ଖାତା ଉପରେ ମନୋନିବେଶ କଲେ ।

ରଘୁନାଥ ଭୀଷଣ ଅପମାନ ପାଇ ଘରକୁ ଫେରିଲା । ତା'ର କେତେଜଣ ଶୁଭେଚ୍ଛୁ ତାକୁ ସାନ୍ତ୍ୱନା ଦେଇ କହିଲେ, "ଗାଁ ଲୋକେ ତମକୁ ଦେବତା ବୋଲି ମଣୁଛନ୍ତି । ଗୋଟାଏ ଲୋକ ରୁକ୍ଷ ବ୍ୟବହାର କଲା ତ କ'ଣ ହେଲା ?"

କିନ୍ତୁ ରଘୁନାଥ ଶାନ୍ତି ପାଇଲା ନାହିଁ । କିପରି ଉପାୟରେ ମହୀବାବୁଙ୍କ ଉପରେ ପ୍ରତିଶୋଧ ନେବ, ସେହି ଚିନ୍ତା କଲା ।

ଦୁଇଦିନ ପରେ ଗାଁ ବାହାରେ ସଡ଼କ ଉପରେ ହଠାତ୍ ଜଣେ ଅପରିଚିତ ଲୋକ ସହ ତା'ର ଦେଖା ହେଲା । ଲୋକଟି ରଘୁନାଥକୁ କହିଲା, "ବାବୁ, ମୁଁ ଜଣେ ପହେଲମାନ୍ କୁସ୍ତିଗୀର । ଆପଣଙ୍କ ଗାଁରେ

କେହି ବ୍ୟବସ୍ଥା କଲେ ମୁଁ ମୋ ବଳ କୌଶଳ ଦେଖାନ୍ତି । ଆପଣମାନଙ୍କର ଯାହା ଇଚ୍ଛା ମୋତେ ସେତକ ପଇସା ଦିଅନ୍ତେ ।"

ରଘୁନାଥ ମୁଣ୍ଡକୁ ଗୋଟାଏ ନୂଆ କଥା ଆସିଗଲା । ସେ କହିଲା, "ଏ ଗାଁରେ କୁସ୍ତି କସ୍‌ରତ୍ ପ୍ରତି ଆଦର କଲାଭଳି ଲୋକ ଜଣେ ମାତ୍ର ଅଛନ୍ତି । ସେ ହେଲେ ମହାଜନ ମହ୍ଣି ମହାପାତ୍ରେ । ତାଙ୍କ ପାଖକୁ ଯାଅ ।"

"ସେ ମୋ ଗୁଣର ଆଦର କରିବେ ?"

"ଖାଲି ଆଦର କରିବେ ? ତମକୁ ମୁଣ୍ଡରେ ବସାଇବେ ।" କହିଲା ରଘୁନାଥ ।

କୁସ୍ତିଗୀର୍ ଖୁସି ହୋଇ ମହାଜନ ଘର ଆଡ଼େ ଚଳିଲେ । ରଘୁନାଥ ଅବସ୍ଥା କ'ଣ ହେବ ତାହା ଆନ୍ଦାଜ କରିନେଲା । ମହ୍ଣିବାବୁ କୁସ୍ତିଗୀର୍‌କୁ ଅପମାନ କରିବେ ଓ କୁସ୍ତିଗୀର ତାଙ୍କୁ ଛେଚି ଦେବ !

ମଜା ଦେଖିବା ପାଇଁ ସେ ମହାଜନଙ୍କ ଘର ଆଗ ରାସ୍ତାରେ ଏପଟ ସେପଟ ହେଲା ।

କୁସ୍ତିଗୀର ଯାଇ ମହ୍ଣିବାବୁଙ୍କୁ ଅଭିନନ୍ଦନ କରି କହିଲା, "କୁସ୍ତି କସ୍‌ରତ୍ ପ୍ରତି ଆପଣଙ୍କ ଅନୁରାଗ ଶୁଣି ଆସିଛି । ଆପଣ…"

"କ'ଣ ହେଲା ? କୁସ୍ତି କସ୍‌ରତ୍ ପ୍ରତି ମୋର ଅନୁରାଗ ? ଶୁଣ ବାବୁ, ମୋ ବାପା ଦାଦା ଚୌଦପୁରୁଷରେ କେହି କୁସ୍ତିର ଧାରି ଧାରି ନାହାନ୍ତି । କେହି ଫାଜିଲ ତମକୁ ସେମିତି କହିଛି । ଯାଅ ।" ମହ୍ଣିବାବୁ ଶୁଣାଇଦେଲେ ।

କୁସ୍ତିଗୀର ମୁହଁ ଫଣ ଫଣ କରି ପଦାକୁ ଆସିଲା । ଅଳ୍ପ ଦୂରରେ ରଘୁନାଥ ଠିଆ ହୋଇଥାଏ ।



"କ'ଣ ହେଲା ?" ରଘୁନାଥ ପାଖକୁ ଆସି ଆଗ୍ରହରେ ପଚାରିଲା ।

"ତମେ ଯାହା କହୁଥିଲ—ମୁଣ୍ଡରେ ବସାଇଲେ—ଏମିତି—" ଏହା କହି କୁସ୍ତିଗୀର୍ ରଘୁନାଥକୁ ଅକ୍ଲେଶରେ ଟେକି ଧରିଲା ଶୂନ୍ୟରେ ।

"କୁହ, ମାଟିରେ ଛେଚିବ ନା ନଈକୁ ଫୋପାଡ଼ିବ ?" କୁସ୍ତିଗୀର୍ ପଚାରିଲା ।

"ଆରେ ଭାଇ, ମୋର ଦୋଷ କ'ଣ ? ତମକୁ ଯଦି ମହାଜନ ଅପମାନ ଦେଲା, ତମେ ସିନା ତା' ଉପରେ ଦାଉ ସାଧିଥାନ୍ତ ?" କାକୁସ୍ଥ ହୋଇ ରଘୁନାଥ କହିଲା । "ତମର ତା' ଉପରେ ରାଗଥିଲା ବୋଲି ମୋ ଦେଇ ତାକୁ ଦଣ୍ଡ ଦିଆଇବାକୁ ଚାହୁଁଥିଲ ନିଶ୍ଚୟ ! ଆହା ! କେଡ଼େ ବୁଦ୍ଧି !" କୁସ୍ତିଗୀର କହିଲା ।

"କ୍ଷମା କର, କ୍ଷମା କର !" ବିକଳରେ କହିଲା ରଘୁନାଥ । କୁସ୍ତିଗୀର ତାକୁ ତଳେ ଥୋଇ ଦେଇ ନିଜ ବାଟରେ ଚାଲିଗଲା ।

ଏକଥା କ୍ରମେ ପ୍ରଘଟ ହୋଇଗଲା । ରଘୁନାଥ ଛୁଟିର ଶେଷ କେଇଦିନ ମନଖରାପ କରି ରହିଥାଏ । ସେ ସହରକୁ ଯିବା ପୂର୍ବଦିନ ତା' ବାପା ତାକୁ କହିଲେ, "ରଘୁ, ମୁଁ ସବୁ ଶୁଣିଛି । ଦୁଃଖ ନକରି ଶିକ୍ଷା କରି ପାରିଲେ ସବୁ ଘଟଣାରୁ ଲାଭ ମିଳିବ । ଶୁଣ । ଯିଏ ସଚ୍ଚା ପରୋପକାରୀ, ସିଏ କେବେ କାହାରି ପ୍ରତି ଦ୍ୱେଷ ରଖେ ନାହିଁ । ତୋର ପରୋପକାର ଗୁଣ ଅଛି ଠିକ୍, କିନ୍ତୁ ତା' ସଙ୍ଗେ ସଙ୍ଗେ ଅଭିମାନ ବି ବଢ଼ୁଛି । ସମସ୍ତେ ତୋର ପ୍ରଶଂସା କରୁଛନ୍ତି ଅଥଚ ମହୀ ମହାପାତ୍ର ରୁକ୍ଷ ବ୍ୟବହାର କଲା, ଏହାଯୋଗୁଁ ତୋର ତା' ଉପରେ ରାଗ ହେଲା । ଅର୍ଥାତ୍ ମହୀ ମହାପାତ୍ର ଯେମିତି ଅର୍ଥ ଲୋଭୀ, ତୁ ସେମିତି ପ୍ରଶଂସା ଲୋଭୀ । ଏତକ ଲୋଭ ଛାଡ଼ିଦେଲେ ତୁ ଶାନ୍ତି ପାଇବୁ ।"

ରଘୁନାଥ ବୁଝିଲା । "ହଁ ବାପା, ସତ କଥା ।" କହି ସେ ଚାଲିଗଲା ।






[ ୧୦ ]

[ଅନେକ ଦୁଃସାହସିକ ପଦକ୍ଷେପ ନେଇ ଅଭୀଷ୍ଟ ସିଦ୍ଧି କରିବା ପରେ ପଦ୍ମପାଦ ଓ ପିଙ୍ଗଳ ସେ ପିଶାଚପୁରୀ ପରିତ୍ୟାଗ କଲେ । ପଦ୍ମପାଦ ଘରେ ସସ୍ତ୍ରୀକେ ଆଶ୍ରମରେ ରହି ପିଙ୍ଗଳ ବିଦାୟ ନେଇ ଭଲ୍ଲୁକକେତୁ ଉପରେ ସବାର୍ ହୋଇ ଉଡ଼ିଆସି ନିଜ କୁଡ଼ିଆ ପାଖରେ ପହଞ୍ଚିଲା ଓ ଦେଖିଲା ମା ତା'ର ଭିକାରୁଣୀ ହୋଇ ବସିଛି । ତା'ପରେ···]

ପିଙ୍ଗଳର କଣ୍ଠସ୍ୱର ଶୁଣି ତା' ମା ଚମକି ଉଠିଲେ ଓ ତାକୁ କୁଣ୍ଢାଇ ପକାଇଲେ । ତାଙ୍କ ଆଖିରୁ ଧାର ଧାର ଲୁହ ବହିଗଲା । ଅନେକ ସମୟ ଯାଏ ସେ କଥା କହି ପାରିଲେ ନାହିଁ । ପିଙ୍ଗଳ ମାକୁ ଧରି ଧରି ଘର ଭିତରକୁ ନେଇଗଲା ଓ ଆଶ୍ଚର୍ଯ୍ୟ ଭାବରେ ପଚାରିଲା, "ମା ! ତମର ହାଲ ଏଭଳି ହେବାର କାରଣ କ'ଣ ? ମୁଁ ଯେଉଁ ଟଙ୍କା ଦେଇଯାଇଥିଲି ସେଥିରେ ତ ତମେ ଭଲରେ ଚଳିବା କଥା ! ସେଇମାନେ କାହାନ୍ତି ?"

ମା ଅନେକ ସମୟ ପରେ ସଙ୍କୋଚ ଛାଡ଼ି କହିଲେ, "ବାପା, ସେ ଦୁହେଁ ମୋତେ ମାରିପିଟି ଟଙ୍କାତକ ନେଇଗଲେ । ଆଉ ମୋତେ ପଚାରନ୍ତି ନାହିଁ ।



କେଡ଼େ ପାପୀ ହେଲେ ଦୁଇ ଭେଣ୍ଡିଆ ପୁଅ ମା ପ୍ରତି ଏଭଳି ବ୍ୟବହାର କରି ପାରନ୍ତି, ସେକଥା ଭାବି ପିଙ୍ଗଳକୁ ଯେତିକି ଦୁଃଖ ଲାଗିଲା, ସେତିକି କ୍ରୋଧ ଆସିଲା ।

"ପୁଅ, ତୁ ଯେ ଭଲରେ ଫେରି ଆସିଲୁ, ସେଇଥିରେ ମୋ ପେଟ ପୂରି ଯାଉଛି । ଆଉ ମୋର କିଛି ଲୋଡ଼ା ନାହିଁ ।" ମା ପୁଣି କହିଲେ ।

"ଭଗବାନଙ୍କ କରୁଣାରୁ ଓ ତମ ଆଶୀର୍ବାଦରୁ ଭଲରେ ଫେରି ଆସିଛି । ଏଣିକି ତମକୁ କିପରି ଭଲରେ ରଖିବି, ସେ ବ୍ୟବସ୍ଥା କରିବି । କିଛି ଚିନ୍ତା ନାହିଁ । ହେଇ ଦେଖ !" ଏହା କହି ପିଙ୍ଗଳ ସେ ଯେଉଁ ହୀରା ସୁନା ଇତ୍ୟାଦି ଆଣିଥିଲା, ସେସବୁ ତାଙ୍କୁ ଦେଖାଇଲା ।

ମା ପାଟିରୁ ଭାଷା ବାହାରିଲା ନାହିଁ । ସେ ଖାଲି କହିଲେ, "ପୁଅ, ତୁ ଭାଗ୍ୟବାନ । ତୋ ସୌଭାଗ୍ୟ ଅତୁଟ ରହୁ । ତୋତେ ଭୋକ ଲାଗୁଥିବ । କିନ୍ତୁ କ'ଣ ଖାଇବାକୁ ଦେବି ? ଘରେ କିଛି ନାହିଁ ।"

ପିଙ୍ଗଳ ହସିଲା ଓ କହିଲା, "ମା ! ସେପାଇଁ ବ୍ୟସ୍ତ ହୁଅ ନାହିଁ । ପ୍ରଥମେ ତମେ କିଛି ଖାଇବା ଜରୁରୀ । କ'ଣ ଖାଇବାକୁ ମନ ହେଉଛି କୁହ ।"

ମା ହସିବେ କି କାନ୍ଦିବେ ? ପୁଅ ଏତେଦିନ ପରେ ଘରକୁ ଫେରିଛି । ସେ ସିନା ତାକୁ ଖାଇବାକୁ ବାଢ଼ିଦେବା କଥା ! କିନ୍ତୁ ତାଙ୍କର ଭାଗ୍ୟ ଏଡ଼େ ମନ୍ଦ ଯେ ଘରେ କିଛି ନାହିଁ । ପୁଅ ପୁଣି ପଚାରୁଛି ସେ କ'ଣ ଖାଇବେ ! ପୁଅ ସଙ୍ଗେ ସଙ୍ଗେ ବା କି ଖାଦ୍ୟ ତାଙ୍କପାଇଁ ଆଣିଦେଇ ପାରିବ ? ତେବେ ପୁଅର କ୍ଷମତା ଓ ବୁଦ୍ଧି ଉପରେ ତାଙ୍କର ଗାଢ଼ ବିଶ୍ୱାସ ଥିଲା ।

"ମୋ ଭୋକ କଥା ଯଦି ମନେ ପକାଇ-ଦେଲୁ, ତେବେ ଯାହା ପାରିବୁ ଆଣ । ଦୁଇ-ଖଣ୍ଡି ଶୁଖିଲା ରୋଟି ହେଲେ ମୋର ଚଳିବ !"

ପିଙ୍ଗଳ ପଦ୍ମପାଦଠାରୁ ଆଣିଥିବା ଯାଦୁ ଥଳିଟି ବାହାର କରି ମନ୍ତ୍ର ପଢ଼ିଲା ଓ ତହିଁ ଭିତରୁ ଗରମ ଗରମ ରୁଟି ତଥା ଗୋଟାଏ ପରେ ଗୋଟାଏ ସୁଖାଦ୍ୟ ବ୍ୟବହାର କଲା ।



ବୁଢ଼ୀ ତାହା ଦେଖି ଅବାକ୍ ହୋଇ ପଚାରିଲା, "ବାପା, ଏ ଛିଣ୍ଡା ଥଳି ଭିତରେ ଏତେ ଜିନିଷ କିପରି ଥିଲା ? ପୁଣି ଗରମ ଅଛି କେମିତି ?"

"ମା, ଥଳି ଭିତରେ ଏସବୁ କିଛି ନଥିଲା, ଥିଲା ଯାଦୁ । ଏଣିକି ତମକୁ ଆଉ କଷ୍ଟ କରି ରୋଷେଇ କରିବାକୁ ପଡ଼ିବ ନାହିଁ । ଯାହା ମନ ହେବ, ମନ୍ତ୍ର ପଢ଼ି ଏ ଯାଦୁଥଳିରୁ ତାହା ବାହାର କରି ହେବ ।" ଏହା ପରେ ପିଙ୍ଗଳ ମାକୁ ମନ୍ତ୍ରଟି ଶିଖାଇଦେଲା ଓ ଥଳିର ରହସ୍ୟ କାହାକୁ ନ କହିବା ନିମନ୍ତେ ପରାମର୍ଶ ଦେଲା ।

ବୁଢ଼ୀ ମନରେ ଆନନ୍ଦ ଉଚ୍ଛୁଳି ଉଠୁଥାଏ । ସେ ଭାବୁଥାଏ, କେଉଁ ପୁଣ୍ୟବଳରେ ସେ ପିଙ୍ଗଳ ଭଳି ସନ୍ତାନ ପାଇଥିଲା ସତେ !

"ବାପା, ଏ ଥଳି ପାଇଲୁ କେମିତି ? ଏ ଧନରତ୍ନ ବା ତୋତେ କିଏ ଦେଲା ?" ବୁଢ଼ୀ ପଚାରିଲା ।

"ମା ! ସେସବୁ କଥା ଧୀରେ ସୁସ୍ଥେ କହିବି । ଆମେ ଯେଉଁ ମୁଲକକୁ ଯାଇଥିଲୁଁ, ସେଠାରେ ଜନମାନବ ନଥିଲେ । ସେ ମୁଲକ ପ୍ରେତପିଶାଚରେ ଭରା । ମୋ ସାଥି ଅତ୍ୟନ୍ତ କୁଶଳୀ ନାବିକ ଥିଲେ ବୋଲି ଆମେ କୌଣସି ମତେ ବର୍ତ୍ତି ଆସିଲୁଁ । ତଥାପି କେତେ ବିପଦ ସାମ୍ନା କରିବାକୁ ପଡ଼ିଛି । କେତେଥର ମୃତ୍ୟୁମୁଖରୁ ଅଳ୍ପକେ ବର୍ତ୍ତି ଆସିଛୁଁ ।"

ପିଙ୍ଗଳ ଆହୁରି କିଛି କହିବାକୁ ଯାଉଥିଲା, ସେତିକିବେଳେ ବାହାରେ ଦରଜାରେ କିଏ ମୁଣ୍ଡପିଟି କାନ୍ଦିବାର ସେ ଶୁଣି ପାରିଲା । ପିଙ୍ଗଳ ଉଠିପଡ଼ି କବାଟ ଖୋଲିଦେଲା । ଦେଖିବା ବେଳକୁ ମଇଳା ଛିଣ୍ଡାଲୁଗା ପିନ୍ଧି ତା'ର ଦୁଇ ଭାଇ ଜୀବଦତ୍ତ ଓ ଲକ୍ଷଦତ୍ତ ଠିଆ ହୋଇଛନ୍ତି ।

ପ୍ରଥମେ ପିଙ୍ଗଳ ଚିତ୍କାର କରି ସେମାନଙ୍କୁ ଗାଳି ବା ଅଭିଶାପ ଦେବାକୁ ମନ କରୁଥିଲା । କିନ୍ତୁ ସେମାନଙ୍କର ଦରିଦ୍ର ଅବସ୍ଥା ଯୋଗୁଁ ଓ ସେମାନେ କାନ୍ଦୁଥିବାରୁ ସେ ଚୁପ୍ ହୋଇଗଲା । ଭାଇମାନେ ତାକୁ ଦେଖି ଯେମିତି ଭୀଷଣ ଲାଜ କଲେ—ସେମିତି ମନେ ହେଲା ।

ଭାଇମାନଙ୍କର ସେ ଅବସ୍ଥା ଦେଖି ପିଙ୍ଗଳ ନିଜ କ୍ରୋଧ ଭୁଲିଗଲା । ତା' ମନରେ ସେମାନଙ୍କ ପ୍ରତି ଦୟା ଆସିଲା । ସେ କହିଲା, "ଭାଇମାନେ, ମୁଁ ଭଗବାନଙ୍କ କରୁଣାରୁ ନିରାପଦରେ ବହୁ ଦୂରଦେଶରୁ ଲେଉଟି ଆସିଛୁ । ସାଥିରେ ଟଙ୍କାପଇସା ଆଣିଛୁ । ଆମେମାନେ ଆରାମରେ ଚଳିପାରିବା ।"

ଜୀବଦତ୍ତ ଓ ଲକ୍ଷଦତ୍ତ ପରସ୍ପର ମୁହଁ ଚାହିଁଚାହିଁ ହେଲେ । ଜୀବଦତ୍ତ କାନ୍ଦ କାନ୍ଦ କରି କହିଲା, "ଭାଇ ପିଙ୍ଗଳ, ଆମେ ଦୁହେଁ ମୂର୍ଖତାବଶତଃ ମା'ଙ୍କ ପ୍ରତି ଯେପରି ଦୁର୍ବ୍ୟବହାର କରିଛୁ, ସେକଥା ତୁ ଶୁଣିଥିବୁ । ଧିକ୍ ଆମକୁ ଧିକ୍ ! ଆଉ କିପରି ମା'ଙ୍କୁ ଆମ ମୁହଁ ଦେଖାଇବୁ ? ତୁ ତାଙ୍କୁ ଆମର ଶତକୋଟି ପ୍ରଣାମ ଜଣାଇ ଦେ । ଆଉ ଆମକୁ କ୍ଷମା କରି ଦେ । ଆମେ ଏବେ ଯାଉଛୁ ।"

ଏହା କହି ଜୀବଦତ୍ତ ବୁଲିପଡି ଚାଲିଯିବାକୁ ଲାଗିଲା । ଲକ୍ଷଦତ୍ତ ତାକୁ ଅନୁସରଣ କଲା ।

ପିଙ୍ଗଳ ସେମାନଙ୍କ ପଥରୋଧ କରି କହିଲା, "ଭାଇ, ଯାହା ହେବାର ହୋଇଛି । ପଛକଥା ଭୁଲିଯାଅ । ଏଣିକି ଆମେମାନେ ନୂଆ ଜୀବନ ଆରମ୍ଭ କରିବା ଚାଲ । ଯଦି ନିଜ ଭୁଲ ପାଇଁ ଅନୁତାପ କରୁଛ, ତେବେ ସେତିକି ଯଥେଷ୍ଟ ।"

ଦୁଇ ଭାଇ ଆହୁରି ଜୋରରେ କାନ୍ଦି ଉଠି କହିଲେ, "ବାଟ ଛାଡ଼ ପିଙ୍ଗଳ, ବାଟ ଛାଡ଼ ! ଆମ ଭଳି ପାପୀଙ୍କ ପାଇଁ ମୃତ୍ୟୁହିଁ ଏକମାତ୍ର ପନ୍ଥା ।



ଆଉ ଆମକୁ ଦେଖିବାକୁ ପାଇବୁ ନାହିଁ ।" ଏହା କହି ଦୁହେଁ ପୁଣି ଅଗ୍ରସର ହେଲେ ।

କୁଡ଼ିଆ ଭିତରୁ ବାହାରି ଆସିଲେ ମା । ସେ ସେମାନଙ୍କ କଥାବାର୍ତ୍ତା ଶୁଣୁଥିଲେ । ତାଙ୍କ ହୃଦୟ ତରଳି ଯାଇଥିଲା । ସେ ଆସି ବଡ଼ ପୁଅକୁ ଧରି ପକାଇ କହିଲେ, "ପିଙ୍ଗଳ କଥା ଶୁଣ । ପଛ କଥା ଭୁଲିଯାଅ । ପିଙ୍ଗଳ ବିଚରା ବହୁତ କଷ୍ଟ କରି, କେତେ ବିପଦ ବରଣ କରି କିଛି ଧନସମ୍ପଦ ଆୟ କରି ଆଣିଛି । ସେଥିରେ ସମସ୍ତେ ଭଲରେ ଚଳ, ମୋର ଏତିକି କାମନା ।"

"ତେବେ ଆମ ପାପର ପ୍ରାୟଶ୍ଚିତ୍ତ କପରି ହେବ ?" ଦୁଇ ଭାଇ ଆଖି ପୋଛି ସମସ୍ବରରେ ପଚାରିଲେ ।

"ତମେ ଅନୁତାପ କରୁଛ; ସେତିକିରେ ଚଳିବ । ଆଉ ସେସବୁ ଭାବି ଲାଭ ନାହିଁ । ଚାଲ, ଘର ଭିତରକୁ ଚାଲ ।" ପିଙ୍ଗଳ ଦୁଇ ଭାଇଙ୍କୁ ଘରମୁହାଁ ଠେଲି ଠେଲି ନେଇ କହିଲା ।

"ହଁ, ପିଙ୍ଗଳ ଠିକ୍ କହୁଛି । ତମେମାନେ ଅଜ୍ଞାନତା ଯୋଗୁଁ ଭୁଲ କରିଛ । ମୁଁ ତମମାନଙ୍କୁ କ୍ଷମା କରୁଛି । ମୋ ଆଗରେ ତମେମାନେ ଅବୋଧ ଶିଶୁ । ମୋର କୌଣସି ରାଗ ଅଭିମାନ ନାହିଁ ।" ମା ବହୁଦିନ ପରେ ହସି କହିଲେ ।

ପିଙ୍ଗଳ ବୁଝିଲା ଯେ ତା' ଭାଇମାନଙ୍କର ଶତ ଅନ୍ୟାୟ ଅପରାଧ ସତ୍ତ୍ୱେ ମା ସେମାନଙ୍କୁ ପୁଣି ଫେରି ପାଇଲେ ଖୁସି ହେବେ ।





ମାଙ୍କର ମମତା ପ୍ରତି ଶ୍ରଦ୍ଧାରେ ତା' ମୁଣ୍ଡ ନୋଇଗଲା । ମାଙ୍କ ମହତ୍ତ୍ୱ ଯୋଗୁଁ ସେ ଭାଇମାନଙ୍କ ପ୍ରତି ଯଥାସମ୍ଭବ ସଦୟ ହେବାକୁ ସ୍ଥିର କଲା । ମଣିଷର ପରିବର୍ତ୍ତନ ହୁଏ । ତା' ଭାଇମାନଙ୍କର ବା କାହିଁକି ହୋଇ ନଥିବ ?

ଅନିଚ୍ଛାର ଭାବ ଦେଖାଇ ଦୁଇ ବଡ଼ଭାଇ ପିଙ୍ଗଳ ସହ କୁଡ଼ିଆ ଭିତରେ ପଶିଲେ ।

ପିଙ୍ଗଳ ଆଣିଥିବା ନୂଆ ଲୁଗାପଟା କାଢ଼ିଆଣି ମା ସେ ଦୁହିଁଙ୍କୁ ପିନ୍ଧିବାକୁ ଦେଲେ । ଦୁଇଭାଇ ବାରମ୍ବାର ସନ୍ତୋଷ ପ୍ରକାଶ କରୁଥାନ୍ତି ଓ ପିଙ୍ଗଳର ପ୍ରଶଂସାରେ ଶତମୁଖ ହେଉଥାନ୍ତି ।

ଲୁଗାପଟା ପିନ୍ଧିସାରି ଦୁଇଭାଇ କହିଲେ, "ଭୋକରେ ଆମ ପେଟ ଜଳୁଛି । ଘରେ କ'ଣ କିଛି ଖାଇବାକୁ ଥିବ ?"

"ମୁଁ ବର୍ତ୍ତମାନ ଖାଦ୍ୟର ବ୍ୟବସ୍ଥା କରୁଛି ।" ଏହା କହି ପିଙ୍ଗଳ ଯାଦୁ ଥଳି ଧରି ବେଗେଇ ଘର ଭିତରକୁ ଗଲା ଓ ମାକୁ ମନ୍ତ୍ରଟି ମନେ ପକାଇଦେଇ ଫେରି ଆସିଲା । ପାଞ୍ଚମିନିଟ ଭିତରେ ମା ନାନା ପ୍ରକାର ସ୍ୱାଦୁ ଖାଦ୍ୟ ପଦାର୍ଥ ଧରି ସେମାନଙ୍କ ଆଗରେ ଆସି ପହଞ୍ଚିଲେ ।

ସେସବୁ ଦେଖି ସେମାନଙ୍କ ଆଖି ଖୋସି ହୋଇଗଲା । ଯେମିତି ବର୍ଷେ କାଳ ଅନାହାର ସହିଛନ୍ତି, ଏହିପରି ଭାବ ଦେଖାଇ ଦୁହେଁ ସେସବୁ ଖାଇବାକୁ ଲାଗିଲେ । ବଡ଼ଭାଇ କହିଲା, "ମା, ଏତେ ପ୍ରକାର ଜିନିଷ ତମେ ତିଆରି କଲ କେତେବେଳେ ?"

ମଝିଆ ଭାଇ କହିଲା, "ମା, ଏଭଳି ସୁଆଦୁ ଖାଦ୍ୟ ମୁଁ ଜୀବନରେ ଖାଇ ନଥିଲି ।"

ପିଙ୍ଗଳ ହସି ହସି କହିଲା, "ଏଣିକି ସବୁଦିନେ ଆମେ ଏମିତି ଭୋଜନ ପାଇବା । ଇଚ୍ଛା କଲେ ଅନ୍ୟମାନଙ୍କୁ ବି ଦେଇ ପାରିବା ।"

ଜୀବଦତ୍ତ ଓ ଲକ୍ଷଦତ୍ତ ଆଶ୍ଚର୍ଯ୍ୟ ହୋଇ ଥରେ ପିଙ୍ଗଳ ଆଡ଼କୁ ଓ ଆଉ ଥରେ ପରସ୍ପର ଚାହିଁଲେ । କିଛି କହିପାରିଲେ ନାହିଁ ।

ରାତିରେ ଖିଆପିଆ ପରେ ଦୁଇଭାଇ ଅଣ୍ଡା ହାଉ୍‌ରେ ବୁଲିବେ ବୋଲି କହି ବାହାରି

ଗଲେ ଓ ଗୋଟିଏ ନିର୍ଜନ ସ୍ଥାନରେ ବସି ପଡ଼ିଲେ ।

"ବର୍ତ୍ତମାନ କ'ଣ କରାଯିବ ?" ଲକ୍ଷଦତ୍ତ ପଚାରିଲା ।

"କୌଣସି ମତେ ଧନରତ୍ନତକ ହାତ କରିବା କଥା ।" କହିଲା ଜୀବଦତ୍ତ ।

"ତରତର ହେବା ଦରକାର ନାହିଁ । ଆମେ ସତକୁ ସତ ଅନୁତାପ କରୁଛୁ, ମା ଓ ପିଙ୍ଗଳ ପ୍ରଥମେ ଏକଥା ବିଶ୍ୱାସ କରି ନଥିଲେ । ଧୈର୍ଯ୍ୟ ଧରିବା ଆବଶ୍ୟକ ।" ଲକ୍ଷଦତ୍ତ କହିଲା ।

"ଧନରତ୍ନ ଅପେକ୍ଷା ଆହୁରି ଲୋଭନୀୟ କିଛି ଅଛି । କୌଣସି ଯାଦୁ ସାହାଯ୍ୟରେ ସେମାନେ ମନଇଚ୍ଛା ଖାଦ୍ୟଦ୍ରବ୍ୟ ପାଇ ପାରୁଛନ୍ତି । ସେକଥା ଭାବୁଛ ? ସେଇଟା ହେଲା ଆସଲ କଥା । ବୁଝିଲ ?" ଜୀବଦତ୍ତ ଗମ୍ଭୀର ଭାବରେ କହିଲା ।

"ମୋର ଧାରଣା ପିଙ୍ଗଳ କୌଣସି ମନ୍ତ୍ରତନ୍ତ୍ର ଶିଖି ଆସିଛି । ନହେଲେ ଖାଲି ଆମ ପାଇଁ ନୁହେଁ, ଅନ୍ୟମାନଙ୍କ ପାଇଁ ମଧ୍ୟ ଭୋଜନର ବ୍ୟବସ୍ଥା କରିପାରିବ ବୋଲି ଏତେ ଗର୍ବ କରି କପରି କହନ୍ତା ?" ଲକ୍ଷଦତ୍ତ କହିଲା ।

ଜୀବଦତ୍ତ ଟିକିଏ ଚିନ୍ତା କରି ପରାମର୍ଶ ଦେଲା, "ତୁ ବେଳ ଦେଖି ମାକୁ ପଚାରି ଏ ରହସ୍ୟ ଉଦ୍‌ଘାଟନ କରିବାକୁ ଚେଷ୍ଟା କର ।"



ପରଦିନ ପିଙ୍ଗଳ ଘରେ ନଥିବା ବେଳେ ଦୁଇଭାଇ ନାନା ପ୍ରକାର ମନୋରଞ୍ଜକ କଥା କହି ମା'ର ବିଶ୍ୱାସ ଉପୁଜାଇ ସେ କପରି ଅଲୌକିକ ଭାବରେ ଖାଦ୍ୟଦ୍ରବ୍ୟ ଆଣି ପାରୁଛି, ସେକଥା ପଚାରିଲେ । ମା କିଛି ସନ୍ଦେହ ନକରି ଯାଦୁଥଳିଟି ବାହାର କରି ଆଣି ସେମାନଙ୍କୁ ଦେଖାଇ କହିଲେ, "ଏଇ ହେଲା ଯାଦୁ ଥଳି । ଏହାକୁ ମନ୍ତ୍ର ପଢ଼ି ଯେଉଁ ପ୍ରକାର ଖାଦ୍ୟ ମାଗିଲେ ଇଏ ଦେବ । କିନ୍ତୁ ଏ ରହସ୍ୟ କେଉଁଠି ହେଲେ ପ୍ରକଟ କରିବ ନାହିଁ ।"

"ସତେ ? ମା, ମୋତେ ସେ ମନ୍ତ୍ର ଶିଖାଇ ଦିଅ । ମୋ'ର ବର୍ତ୍ତମାନ ଇଚ୍ଛାପି

ଖାଇବାକୁ ଇଚ୍ଛା ହେଉଛି ।" ଲକ୍ଷଦତ୍ତ ଅଳି କଲା ।

ମା ସେମାନଙ୍କର ପୂର୍ବ ବ୍ୟବହାର କଥା ମନରେ ନ ଧରି ସବୁ କିଛି ଭୁଲିଗଲେ । ପିଙ୍ଗଳକୁ ସେମାନେ ଦଗା ଦେଇ ପାରନ୍ତି, ସେ କଥା ବି ତାଙ୍କ ମନକୁ ଆସିଲା ନାହିଁ । ସେ ମନ୍ତ୍ରଟି ସେମାନଙ୍କୁ ଭଲଭାବେ ଶିଖାଇ-ଦେଲେ ଓ ସେମାନେ ଥଳିରୁ ନାନା ପ୍ରକାର ଖାଦ୍ୟଦ୍ରବ୍ୟ ବାହାର କରି ଖାଇବାକୁ ଲାଗିଲେ ।

ଥଳିକୁ କିପରି ଆତ୍ମସାତ୍ କରିବେ, ଜୀବଦତ୍ତ ଓ ଲକ୍ଷଦତ୍ତ ଆଗରେ ତାହାହିଁ ହେଲା ଏକମାତ୍ର ପ୍ରଶ୍ନ ।

ସେମାନେ ସ୍ଥିର କଲେ, ପ୍ରଥମେ ପିଙ୍ଗଳକୁ ଯେମିତି ହେଲେ ଘରୁ ବିଦା କରିବାକୁ ହେବ । ତା'ପରେ ସହଜରେ ମା'ଠୁଁ ଧନରତ୍ନ ସହ ଯାଦୁଥଳି ଛଡ଼େଇ ନେଇ ହେବ ।

କିନ୍ତୁ ପିଙ୍ଗଳକୁ କିପରି ବିଦାୟ କରାଯିବ ହେବ ?

ଜୀବଦତ୍ତ କହିଲା, "ଆଜି ମୁଁ ବଜାରରେ ଜଣେ ବିଦେଶୀ ନାବିକକୁ ଦେଖିଥିଲି । ସେ ତାଙ୍କ ଜାହାଜରେ କାମ କରିବା ପାଇଁ କେତେଜଣ ଯୁବକ କ୍ରୀତଦାସ ଖୋଜୁଥିଲା । ମୁଁ ତ ବଡ଼ଭାଇ—ପିଙ୍ଗଳର ଗାର୍ଜିନ । ତେଣୁ ପିଙ୍ଗଳକୁ ସେ ନାବିକକୁ ବିକି କରି ଦେବାରେ କୌଣସି ଅସୁବିଧା ହେବ ନାହିଁ ।"

ଲକ୍ଷଦତ୍ତ କହିଲା, "ସାବାସ୍ !"

ପରଦିନ ଦୁଇଭାଇ ଯାଇ ନାବିକ ପାଖରେ ପହଞ୍ଚି କହିଲେ, "କପ୍ତାନ୍ ସାହେବ୍ ! ଆମର ଗୋଟାଏ ଉଦ୍ଦଣ୍ଡ ସାନଭାଇ ଅଛି । ନାମ ପିଙ୍ଗଳ । ସେ ଆମକୁ ଓ ଆମ ମା ବୁଢ଼ୀକୁ ବଡ଼ କଷ୍ଟ ଦେଲଣି । ତା ଅତ୍ୟାଚାରରୁ କିପରି ବଞ୍ଚିବୁଁ ? ସେଇ ବିଷୟରେ ଆପଣଙ୍କ ସହ ପରାମର୍ଶ କରିବାକୁ ଆସିଛୁଁ । (କ୍ରମଶଃ)






# ବିଚିତ୍ର ଶୁଆ

ନିଶା ଗରଜୁଥାଏ । ଭୁହାକୁ ଭୁହା ବର୍ଷା ହେଉଥାଏ । ଶ୍ୱାନଶ୍ୱାପଦଙ୍କ ରଡ଼ ଓ ବଜ୍ରଧ୍ୱନି ମଝିରେ ଶୁଭୁଥାଏ ଅଶରୀରୀମାନଙ୍କ ଅଟ୍ଟହାସ୍ୟ । ବିଜୁଳି ଆଲୁଅରେ ଦିଶିଯାଉଥାଏ ଭୟାବହ ମୂର୍ତ୍ତିମାନ ।

କିନ୍ତୁ ରାଜା ବିକ୍ରମାର୍କ ତିଳେ ମଧ୍ୟ ବିଚଳିତ ବୋଧ ନକରି ପୁନର୍ବାର ବୃକ୍ଷଟି ପାଖକୁ ଲେଉଟି ଆସିଲେ ଓ ବୃକ୍ଷାରୋହଣ କରି ଶବଟିକୁ ଉତାରି ଆଣିଲେ । ତା'ପରେ ତାକୁ କାନ୍ଧରେ ପକାଇ ଶୂନ୍‌ଶାନ୍ ଶ୍ମଶାନ ପଥ ଅତିକ୍ରମ କରିବାକୁ ଆରମ୍ଭ କରିବା ମାତ୍ରେ ଶବସ୍ଥିତ ବେତାଳ କହିଲା, "ରାଜା! ତମେ ଏଭଳି ଭୟଙ୍କର ରାତିରେ ଯେ ଏଭଳି ପରିଶ୍ରମ କରୁଛ, ଏହା ପଛରେ କି'ଣ ପ୍ରେରଣା ଥାଇପାରେ? କୌଣସି ବନ୍ଧୁର ଅନୁରୋଧ? କିନ୍ତୁ ବନ୍ଧୁତାର ଅର୍ଥ କ'ଣ? ଆଜି ଯାହାକୁ

## ବେତାଳ କଥା



ନ ଦେଖିଲେ ରହିହୁଏ ନାହିଁ, କାଲି ସିଏ ଗଲେ କେତେ ରହିଲେ କେତେ ସେଥିରେ କିଛି ଯାଏ ଆସେ ନାହିଁ । ଗୋଟିଏ ଦୃଷ୍ଟାନ୍ତ ଦେଉଛି; ମନଦେଇ ଶୁଣ । ଶୁଣିଲେ ଶ୍ରମଭାର ଲାଘବ ମନେ ହେବ ।"

ବେତାଳ ଗପିଲା : ଧାରା ନଗରୀରେ ବାସ କରୁଥିଲେ ସୁଦର୍ଶନ ନାମକ ବଣିକ । ତାଙ୍କର ବ୍ୟବସାୟ ଥିଲା ବହୁତ ସମୃଦ୍ଧ । ପୁଅମାନେ ବି ଯୋଗ୍ୟ ଥିଲେ ଏବଂ କର୍ମଚାରୀମାନେ ଥିଲେ ବିଶ୍ୱସ୍ତ ।

ସୁଦର୍ଶନ ମଝେ ମଝେ ଦୂର ଦୂରାନ୍ତର ଯାଉଥାନ୍ତି ବେପାର ପାଇଁ । ନୂଆ ନୂଆ ଜିନିଷ ପ୍ରତି ତାଙ୍କର ବହୁତ ଆକର୍ଷଣ ଥାଏ ।

ଥରେ ସୁଦର୍ଶନ ରତ୍ନପୁର ଯାଇଥାନ୍ତି ବାଣିଜ୍ୟ ପାଇଁ । ସେଠାରେ ଜଣେ ଅପରିଚିତ ଲୋକ ଆସି ତାଙ୍କୁ ଗୋଟିଏ ଶୁଆ ଦେଖାଇ କହିଲା, "ବାବୁ, ଆପଣ ଏଭଳି ଶୁକପକ୍ଷୀ ଦୁନିଆରେ ଆଉ ଦ୍ୱିତୀୟ ଦେଖିବେ ନାହିଁ । ମୁଁ ଗରିବ ଲୋକ ବୋଲି ସିନା ଏହାକୁ ବିକୁଛି, ନହେଲେ ଏହାକୁ ଚିରଦିନ ପୋଷନ୍ତି ।"

"ଏହାର ବିଶେଷତ୍ୱ କ'ଣ ?" ସୁଦର୍ଶନ ପଚାରିଲେ ।

"ଆପଣଙ୍କର ଯେ କୌଣସି ସମସ୍ୟାରେ ଏ ଶୁକ ଆପଣଙ୍କୁ ସତ୍‌ପରାମର୍ଶ ଦେଇପାରିବ । ପୁଣି ଆପଣଙ୍କ ମନ ଖରାପ ଥିବାବେଳେ ଏହା ନାନା ସରସ କାହାଣୀ ଶୁଣାଇ ଆପଣଙ୍କୁ ଖୁସି କରି ରଖିବ ।" ଲୋକଟି କହିଲା ।

ସୁଦର୍ଶନ ଏକଥାରେ ପରତେ ଗଲେନାହିଁ । କିନ୍ତୁ ସେ ଶୁଆ ସହ ଅଳ୍ପ ସମୟ କଥାବାର୍ତ୍ତା କରି ଦେଖିଲେ, ବାସ୍ତବିକ ପକ୍ଷୀଟି ସେ ଜାଣିଥିବା ଅନେକ ମଣିଷଙ୍କ ତୁଳନାରେ ଅଧିକ ଜ୍ଞାନୀ । ସେ ଯେତିକି ଆଶ୍ଚର୍ଯ୍ୟ ହେଲେ, ସେତିକି ବିସ୍ମିତ ହେଲେ ଓ ହଜାରେ ମୁଦ୍ରା ଦେଇ ଶୁଆକୁ କିଣିଲେ ।

ଫେରିବା ବାଟରେ ସୁଦର୍ଶନ ଶୁଆର ଗୁଣ ବିଷୟରେ ଆହୁରି ବେଶି ଜାଣିଲେ । ବାସ୍ତବିକ ଶୁଆ ତାଙ୍କୁ ନାନା ସରସ କାହାଣୀ ଶୁଣାଇ ତାଙ୍କ ମନୋରଞ୍ଜନ କରିବା ସଙ୍ଗେ ସଙ୍ଗେ ନାନା ବିଷୟରେ ସତ୍‌ପରାମର୍ଶ ଦେଲା । ଯାହା

ସୁଦର୍ଶନଙ୍କୁ ବେଶି ଭଲ ଲାଗିଲା, ତାହା ହେଲା ଶୁଆର ନିଃସ୍ୱାର୍ଥପରତା । ତାଙ୍କର ଯେତେ ମଣିଷ-ସାଥି ଥିଲେ, ସମସ୍ତେ କିଛି ନା କିଛି ସ୍ୱାର୍ଥ ଯୋଗୁଁ ତାଙ୍କ ସହ ଭଲ ବ୍ୟବହାର କରୁଥିଲେ । କିନ୍ତୁ ଶୁଆର କୌଣସି ସ୍ୱାର୍ଥ ନଥିଲା ।

ଘରକୁ ଫେରି ଆସିବା ପରେ ସେ ଆଉ ବେପାର ବଣିଜରେ ବିଶେଷ ମନ ନଦେଇ ଅଧିକାଂଶ ସମୟ ସେ ଶୁଆ ସହ କଟାଇଲେ । ଅବଶ୍ୟ ତାଙ୍କ ବ୍ୟବସାୟରେ ବିଶେଷ କିଛି କ୍ଷତି ହେଲା ନାହିଁ, କିନ୍ତୁ ତାଙ୍କ ପରିବାରର ଲୋକେ ଚିନ୍ତିତ ହେଲେ । ସେମାନଙ୍କର ଆଶଙ୍କା ହେଲା ଯେ ଆଜି ନ ହେଲେ କାଲି ବ୍ୟବସାୟରେ କ୍ଷତି ହୋଇପାରେ । ଅନ୍ତତଃ ସୁଦର୍ଶନ ବ୍ୟବସାୟରେ ଅଧିକ ମନଦେଲେ ତ ଅଧିକ ଲାଭ ହୁଅନ୍ତା! ସେମାନେ ଶୁଆକୁ ଈର୍ଷା କଲେ କହିଲେ ଠିକ୍ ହେବ ।

ଥରେ ତାଙ୍କ ପୁଅମାନେ ତାଙ୍କୁ କହିଲେ, "ବାପା, ଆପଣ ଶୁଆ ସହ ଏତେ ସମୟ କଟାଇଲେ କିପରି ଚଳିବ ?"

"କାହିଁକି ଚଳିବ ନାହିଁ ? ମୁଁ ଯଦି ଆଜି ମରିଯାଏଁ, ତେବେ ବେପାର ପୁଣି ଚଳିବ ନା ନାହିଁ ? ଶୁଣ, ଶୁଆ ସହ କଥା ହୋଇ ମୁଁ ଶାନ୍ତି ପାଏଁ ।" ସୁଦର୍ଶନ ଉତ୍ତର ଦେଲେ ।

"ଯଦି ଶୁଆର ଏତେ ଗୁଣ ଅଛି, ତେବେ ସେ ତମକୁ ଏକାଥରେ ଶାନ୍ତି ଦେଇଦେଉ ନାହିଁ ?" ତାଙ୍କ ସ୍ତ୍ରୀ ପଚାରିଲେ ।



ସୁଦର୍ଶନ କିଛି କହିଲେ ନାହିଁ । ସନ୍ଧ୍ୟା-ବେଳେ ସେ ଶୁଆକୁ ସେ କଥା ନିଜେ ପଚାରିଲେ ।

ଶୁଆ କହିଲା, "ଆଜ୍ଞା, ଯିଏ ନିଜେ ପିଞ୍ଜରାରେ ବନ୍ଦୀ, ସିଏ ଅନ୍ୟକୁ ଶାନ୍ତି ଦେଇ ପାରେନା । ତମେ ନିଜେ ତମ ସ୍ୱାର୍ଥର ପିଞ୍ଜରାରେ ବନ୍ଦୀ । ନିଜକୁ ବିସ୍ମୃତ କରିଦିଅ । ଖାଲି ନିଜ କଥା ନଭାବି ଅନ୍ୟର ସୁଖ-ଦୁଃଖରେ ଭାଗି ହୁଅ । ଦେଖିବ, ତମକୁ ଶାନ୍ତି ମିଳିବ ।"

ପରଦିନଠାରୁ ସୁଦର୍ଶନ ଦାନଧ୍ୟାନରେ ମନ ଦେଲେ । କାହାର କୌଣସି ବିପଦ ହେଲେ ସେ ସଙ୍ଗେ ସଙ୍ଗେ ସେଠାରେ ପହଞ୍ଚି ବିପଦ



ଏଣେ ସୁଦର୍ଶନଙ୍କ ଦାନପଣିଆ ଯୋଗୁଁ ତାଙ୍କ ସ୍ତ୍ରୀ ଓ ପୁଅଝିଅ ବଡ଼ ଚିନ୍ତିତ ହେଲେ । ସେ ସମ୍ପତ୍ତି ଉଡ଼ାଇଦେବେ ବୋଲି ଆଶଙ୍କା କରି କୌଣସି ମତେ ସେ ଶୁଆକୁ ବିଦାୟ କରିବା ନିମନ୍ତେ ସେମାନେ ବ୍ୟଗ୍ର ହେଲେ । ଦିନେ ସୁଦର୍ଶନଙ୍କୁ ସେମାନେ କହିଲେ, "କୌଣସି ପକ୍ଷୀ କେବେ ଏଡ଼େ ଅଜବ ଆଚରଣ କରିପାରେ ? ଏ ଶୁଆକୁ ନିଶ୍ଚୟ ଅନ୍ୟ ଗୋଟାଏ ଶକ୍ତି ଆୟତ୍ତ କରିଛି । ସେ ଶକ୍ତି ପିଶାଚ ବା ଯକ୍ଷ ହେବା ଅସମ୍ଭବ ନୁହେଁ । ଏଭଳି ଶୁଆକୁ ଘରେ ରଖିବା ବିପଜ୍ଜନକ । ଏହାକୁ ବିଦାୟ କର ।"

ସୁଦର୍ଶନ ପ୍ରଥମେ ଏଭଳି ମନ୍ତବ୍ୟ ଶୁଣି ବିରକ୍ତି ଅନୁଭବ କଲେ । ତେଣୁ ପରିବାରର ଲୋକେ ନୀରବ ରହିଲେ । କିନ୍ତୁ ବେଶିଦିନ ନୁହେଁ । ସେମାନେ ସୁଦର୍ଶନଙ୍କର ଜଣେ ବିଶିଷ୍ଟ ବନ୍ଧୁଙ୍କ ଆଗରେ ଏ ଆଶଙ୍କା ପ୍ରକଟ କଲେ । ସେ ବନ୍ଧୁ ଦିନେ ସୁଦର୍ଶନ ଭଲ ମିଜାଜ୍‌ରେ ଥିବାବେଳେ ତାଙ୍କୁ ଏକଥା କହିଲେ ।

"ଆଚ୍ଛା, ମୁଁ ଏ ବିଷୟରେ ଚିନ୍ତା କରିବି ।" ସୁଦର୍ଶନ କହିଲେ । ସେ ନିର୍ଜନରେ ଶୁଆକୁ ପଚାରିଲେ, "ଆଚ୍ଛା, ତୁମେ କଥାବାର୍ତ୍ତା କରିବାରେ ଏଭଳି ଆଶ୍ଚର୍ଯ୍ୟ ଶକ୍ତି ପାଇଲ କାହୁଁ ? କୌଣସି ପଶୁପକ୍ଷୀ ତ ଏଭଳି ହେବା କଥା ନୁହେଁ !"

ଲୋକର ସହାୟତା କରନ୍ତି । ଏହା ଫଳରେ ତାଙ୍କ ନିଜର ଶାନ୍ତି ଓ ଆନନ୍ଦ ବୃଦ୍ଧି ପାଇବାର ସେ ଅନୁଭବ କଲେ ।

ଦିନେ ସେ ଶୁଆକୁ କହିଲେ, "ତୋ ପରାମର୍ଶ ଦ୍ୱାରା ମୁଁ ଏଡ଼େ ଉପକାର ପାଇଛି ଯେ ତୋ'ତେ କ'ଣ ଦେଇ ତୋ ଋଣ ପରିଶୋଧ କରିବି ବୁଝି ପାରୁନାହିଁ ।"

"ମୋତେ ମୁକ୍ତି ଦିଅ ।" ଶୁଆ କହିଲା ।

ସୁଦର୍ଶନଙ୍କ ମୁହଁ ଶୁଖିଗଲା । ସେ କହିଲେ, "ନା, ସେକଥା କହ ନା । ଅନ୍ୟ ଯାହା ମାଗିବୁ, ଦେବି ।"

"ଅନ୍ୟ କିଛି ମୋତେ ସନ୍ତୋଷ ଦେବ ନାହିଁ ।" କହିଲା ଶୁଆ ।



ଶୁଆ କହିଲା, "ଥରେ ଜଣେ ମହାପୁରୁଷ କୌଣସି ଅଭିଶାପ ଯୋଗୁଁ ଶୁକ ଜନ୍ମ ପାଇଥିଲେ । ମୁଁ ତାଙ୍କର ସନ୍ତାନ । ସେ ତାଙ୍କର ତପଃଶକ୍ତିରୁ ମୋତେ କିଛି ଦେଇଥିବାରୁ ମୁଁ ଏଭଳି କଥାବାର୍ତ୍ତା କରିପାରୁଛି ।"

ସୁଦର୍ଶନ ଏ ଉତ୍ତରରେ ସନ୍ତୁଷ୍ଟ ହୋଇ କହିଲେ, "ମୋର ବଡ଼ ଭାଗ୍ୟ ତୁମକୁ ପାଇଛି ।"

"କିନ୍ତୁ ମୋର ଦୁର୍ଭାଗ୍ୟ ମୁଁ ବନ୍ଦୀ ହୋଇ ରହିଛି ।" ଶୁଆ କହିଲା । ସୁଦର୍ଶନ ନୀରବ ରହିଲେ ।

ଦୁଇ ଚାରିଦିନ ପରେ ଦିନେ ଅସାବଧାନତା ବଶତଃ ଶୁଆର ପିଞ୍ଜରା ଖୋଲା ରହିଗଲା । ସକାଳେ ସୁଦର୍ଶନ ତାହା ଲକ୍ଷ୍ୟ କଲେ ଓ ଆଶ୍ଚର୍ଯ୍ୟ ହୋଇ ଶୁଆକୁ ପଚାରିଲେ, "ତମେ ମୁକ୍ତି ପାଇଁ ବ୍ୟାକୁଳ ହେଉଥିଲ । କିନ୍ତୁ ପିଞ୍ଜରା ଖୋଲା ଥିବା ସତ୍ତ୍ୱେ ଉଡ଼ି ନଗଲ କିପରି ?"

"ମୁଁ ମୁକ୍ତି ପାଇଁ ବ୍ୟାକୁଳ ଠିକ୍, କିନ୍ତୁ ମୁଁ ଅନ୍ୟାୟରେ କିଛି କରିବି ନାହିଁ । ତମେ ମୋତେ ପାଇବା ସକାଶେ ହଜାରେ ମୁଦ୍ରା ଦେଇଛ । ତେଣୁ ମୁଁ ତମ ସମ୍ମତି ବିନା ଚାଲିଯିବି କିପରି ?" ଶୁଆ ଉତ୍ତର ଦେଲା ।

ସୁଦର୍ଶନ ଖୁସି ହେଲେ । ତେଣିକି ସେ ଆଉ ପିଞ୍ଜରା ବନ୍ଦ କରିବା ଦିଗରେ ଧ୍ୟାନ ଦେଲେ ନାହିଁ । "ଦେଖ ବାବୁ, ପିଞ୍ଜରା ଖୋଲା ରଖ ନାହିଁ । ମୋର ହୁଏତ ପଳାଇ ଯିବାକୁ ଲୋଭ ହେବ ।" ଶୁଆ କହିଲା ।

"ତମେ ଗଲେ ତ ନିଜ ଇଚ୍ଛାରେ ଯିବ !" ସୁଦର୍ଶନ କହିଲେ ।

"ଅନେକ ସମୟରେ ଯାହା ଅନୁଚିତ, ତାହା ବି ଜଣେ ସୁଯୋଗ ପାଇଲେ କରିପାରେ । ବାରମ୍ବାର ପିଞ୍ଜରା ଖୋଲା ରହୁଥିବାର ଦେଖିଲେ ମୋର ପଳାଇଯିବାକୁ ଲୋଭ ହୋଇପାରେ । ମୁଁ ଲୋଭବଶତଃ ଅନ୍ୟାୟ କରିବାକୁ ଚାହେଁ ନାହିଁ । ତେଣୁ ପିଞ୍ଜରା ବନ୍ଦ ରଖ; ଏହା ମୋର ବିଶେଷ ଅନୁରୋଧ ।" ଶୁଆ କହିଲା ।

କିନ୍ତୁ ସୁଦର୍ଶନ ପିଞ୍ଜରା ବନ୍ଦ ରଖିବା ଦିଗରେ ଧ୍ୟାନ ଦେଲେ ନାହିଁ । ଶୁଆ ବି



"ଆଜ୍ଞା, ହଜାରେ, ଦୁଇ ହଜାର, ପାଞ୍ଚ ହଜାର—ଯେତେ ମୂଲ୍ୟ ଲାଗିବ ଦିଆଯିବ। ଆପଣ ତାହା ଅଣାନ୍ତୁ।" ସୁଦର୍ଶନଙ୍କ ବଡ଼ ପୁଅ କହିଲା।

ବୈଦ୍ୟରାଜ ହସିଲେ ଓ କହିଲେ, "ପୁଅ! ଦାମ ଯୋଗୁଁ ଯେ ଏହା ଅମିଳନ୍ତ ତାହା ନୁହେଁ। ଏହା ଆଜିକାଲି ଆଉ ଦେଖିବାକୁ ମିଳୁନାହିଁ। କେଉଁଠି ବଣ ପାହାଡ଼ ମୂଳକରେ ଥିବ, କିନ୍ତୁ ଆମେ ଖୋଜି ଖୋଜି ପାଇନାହୁଁ।"

ହଠାତ୍ ଶୁଆ କହିଲା, "ମୋତେ କହିଲେ ମୁଁ ରାଜଗନ୍ଧ ଗୁଳ୍ମ ଆଣିଦେବି।"

ସୁଦର୍ଶନ ସେଥିରେ ସମ୍ମତ ହେଲେ। ଶୁଆ ଉଡ଼ିଗଲା। ତିନିଦିନ ପରେ ସେ ରାଜଗନ୍ଧ ଧରି ଲେଉଟି ଆସିଲା। ବୈଦ୍ୟରାଜ ବିସ୍ମିତ ହେଲେ। ଦିନକ ଭିତରେ ସୁଦର୍ଶନ ଆରୋଗ୍ୟ ହେବାର ସୂଚନା ଦେଖାଗଲା। ସପ୍ତାହେ ପରେ ସେ ସୁସ୍ଥ ହୋଇଗଲେ।

କିନ୍ତୁ ଦେଖାଗଲା ଶୁଆ କୁଆଡ଼େ ଚାଲି ଯାଇଛି। ସୁଦର୍ଶନ କେଇଦିନ ଧରି ଏଣେ-ତେଣେ ତାକୁ ଖୋଜିଲେ। କିନ୍ତୁ ଶୁଆ ଆଉ ଆଖିରେ ପଡ଼ିଲା ନାହିଁ।

ଛଅମାସ ପରେ ଦିନେ ସୁଦର୍ଶନଙ୍କ ଘର ଭିତରେ ଥିବା ଗୋଟାଏ ପ୍ରତିମୂର୍ତ୍ତି ଉପରେ ଶୁଆଟି ଆସି ବସିପଡ଼ି ସୁଦର୍ଶନଙ୍କୁ କହିଲା, "ପିଞ୍ଜରି ଏଯାଏ ଝୁଲାଇ ରଖିଛ ଦେଖୁଛି! କ'ଣ, ଭିତରେ ପଶିବି?"

କେବେ ପଳାଇଯିବା ଦିଗରେ ଉଦ୍ୟମ କରିବାର ଦେଖାଗଲା ନାହିଁ। ଦିନ ଗୁଡ଼ିଏ ବିତିଯିବାକୁ ଲାଗିଲା।

ଏହାର କିଛିଦିନ ପରେ ସୁଦର୍ଶନ ବେମାର ପଡ଼ିଲେ। ଅନେକ ପ୍ରକାର ଚିକିତ୍ସାରେ ରୋଗ ଭଲ ହେଲା ନାହିଁ। ସ୍ଥାନୀୟ କବିରାଜମାନଙ୍କ ପରାମର୍ଶରେ ଦୂରରୁ ଜଣେ ବିଖ୍ୟାତ ବୈଦ୍ୟ-ରାଜଙ୍କୁ ଡକାହେଲା। ସେ ମହାଶୟ ଆସି ସୁଦର୍ଶନଙ୍କୁ ଭଲ ଭାବରେ ପରୀକ୍ଷା କରି କହିଲେ, "ଆମ ଶାସ୍ତ୍ରରେ ଏ ରୋଗ ଭଲ ହେବା ପାଇଁ ମାତ୍ର ଗୋଟିଏ ଗୁଳ୍ମର ଚେର କଥା କୁହାଯାଇଛି। ତାହା ରାଜଗନ୍ଧ ଗୁଳ୍ମ। କିନ୍ତୁ ତାହା ଅମିଳନ୍ତ।"

"ତମର ଯେତେବେଳେ ଇଚ୍ଛା ପଶିପାର, ଯେତେବେଳେ ଇଚ୍ଛା ଯାଇପାର!" ସୁଦର୍ଶନ କହିଲେ ।

"ଧନ୍ୟବାଦ । ସେଇଆ ହେଉ ।" ଏହା କହି ଶୁଆ ପିଞ୍ଜରାରେ ପଶିଲା ।

ସୁଦର୍ଶନ ଆନନ୍ଦିତ ହେଲେ ।

ବେତାଳ ଟିକିଏ ଚୁପ୍ ରହି ତୀବ୍ର କଣ୍ଠରେ ପଚାରିଲା, "ରାଜା ! ଶୁଆ ଯଦି କହୁଥିଲା ତାକୁ ନିଜେ ସୁଦର୍ଶନ ମୁକ୍ତ ନ ଦେଲେ ସେ ଯିବ ନାହିଁ, ତେବେ ସେ ପଳାଇଗଲା କାହିଁକି ? ପୁଣି ଯେଉଁ ପିଞ୍ଜରାରେ ରହିବାକୁ ସେ ନାରାଜ ଥିଲା, ସେଥିରେ ବଳେ ବଳେ ପଶିଲା ବା କାହିଁକି ? ପାରିଲେ ମୋ ପ୍ରଶ୍ନର ଉତ୍ତର ଦିଅ ! ଉତ୍ତର ଦେବାର ଶକ୍ତି ଥିବା ସତ୍ତ୍ୱେ ଯଦି ନୀରବ ରହିବ, ତେବେ ତମ ଶିର ହେବ ସ୍କନ୍ଧଚ୍ୟୁତ ।"

ଟିକିଏ ମଧ୍ୟ ଦ୍ୱିଧା ନକରି ରାଜା ବିକ୍ରମାର୍କ କହିଲେ, "ଶୁଆ ଯେତେବେଳେ ଏଭଳି ଔଷଧ ଆଣିଦେଲା ଯାହାଦ୍ୱାରା ସୁଦର୍ଶନଙ୍କର ପ୍ରାଣରକ୍ଷା ହେଲା, ସେତେବେଳେ ଆଉ ସେ ହଜାରେ ମୁଦ୍ରା ବାବଦରେ ତା'ର ସଙ୍କୋଚ କରିବାର କାରଣ ରହିଲା ନାହିଁ । ସେ ଅମିଳକ ଗୁଳ୍ମ ପାଇଁ ତ ଯେତେ ଲୋଡ଼ା ସେତେ ଅର୍ଥ ଖର୍ଚ୍ଚ କରିବାକୁ ତାଙ୍କ ପରିବାର ପ୍ରସ୍ତୁତ ଥିଲେ ।

"ଦ୍ୱିତୀୟରେ, ଶୁଆ ଫେରି ଆସିବାର କାରଣ ସୁଦର୍ଶନଙ୍କ ପ୍ରତି ତା'ର ଶ୍ରଦ୍ଧା ତଥା ତା' ନିଜର ମାନବ ସୁଲଭ ଗୁଣ । କିନ୍ତୁ ପିଞ୍ଜରା ଆଉ ତା' ପାଇଁ ବନ୍ଦୀଶାଳା ହୋଇ ରହି ନଥିଲା । ଯେତେବେଳେ ସେ ସ୍ୱାଧୀନ ଭାବରେ ଯିବା ଆସିବା କରିପାରିବ, ସେତେ-ବେଳେ ପିଞ୍ଜରା ତା' ପାଇଁ ନୀଡ଼ ମାତ୍ର, ବନ୍ଧନ ନୁହେଁ ।"

ରାଜାଙ୍କ ଉତ୍ତରଦାନ ଶେଷ ହେବା ମାତ୍ରେ ଶବ ସହ ଶବସ୍ଥିତ ବେତାଳ ତାଙ୍କ କାନ୍ଧରୁ ଖସିଯାଇ ପୁନର୍ବାର ବୃକ୍ଷ ଡାଳରେ ଝୁଲି ପଡ଼ିଲା । (କଳ୍ପିତ)



# ଭଣ୍ଡ ଜ୍ୟୋତିଷ

ଛତ୍ରପୁର ରାଜ୍ୟରେ ଜଣେ ଜ୍ୟୋତିଷ ଥିଲେ । ସେ ନିଜକୁ ଜଣେ ଦେବୀ-ସାଧକ ବୋଲି ପ୍ରଚାର କରିଦେଇଥାନ୍ତି ଏବଂ ଅନେକେ ତାଙ୍କୁ ବିଶ୍ୱାସ କରୁଥାନ୍ତି ।

ରାଜା ବି ତାଙ୍କୁ ଅତ୍ୟନ୍ତ ବିଶ୍ୱାସ କରୁଥିଲେ । ଏପରିକି କୌଣସି ବିବାଦ ବିଚାର ପାଇଁ ତାଙ୍କ ପାଖକୁ ଆସିଲେ ସେ ଗୋପନରେ ଜ୍ୟୋତିଷଙ୍କୁ ପଚାରୁଥାନ୍ତି, "ଦୁଇ ପକ୍ଷର ଜାତକ ଦେଖି ବା ଦେବୀପୂଜା କରି କିଏ ଅପରାଧ କରିଥାଇ ପାରେ କହନ୍ତୁ ଦେଖି !" ଜ୍ୟୋତିଷ ଯାହାକୁ ଅପରାଧୀ ବୋଲି କହୁଥିଲେ, ରାଜା ତାକୁ ଦଣ୍ଡ ଦେଉଥିଲେ ।

ଜ୍ୟୋତିଷ ଥିଲେ ଲୋଭୀ । ସେ କ୍ରମେ ଯିଏ ତାଙ୍କୁ ଉତ୍କୋଚ ଦେଲା, ତାହାରି ସପକ୍ଷରେ ରାୟ ଦେବାକୁ ଲାଗିଲେ । ଏକଥା ରାଜା ଜାଣିଲେ । ଦିନେ ସେ ଜ୍ୟୋତିଷଙ୍କୁ ଡକାଇ କହିଲେ, "ଆମର ଜଣେ ଅମାତ୍ୟ କହୁଛନ୍ତି କି ଜଣେ ବିଶିଷ୍ଟ ବ୍ୟକ୍ତି ଉତ୍କୋଚ ନିଅନ୍ତି । ଅମାତ୍ୟ ସତ କହୁଛନ୍ତି ନା ମିଛ କହୁଛନ୍ତି, ତାହା ଆପଣ କହି ପାରିବେ ?"

"ହଁ ଆଜ୍ଞା, ଦେବୀ ପୂଜା କରି କହିଦେବି ।" ଜ୍ୟୋତିଷ କହିଲେ ।

"ବେଶ୍ । ଯଦି ଅମାତ୍ୟ ମିଛ କହୁଥିବେ, କଠୋର ଦଣ୍ଡ ଦେବି ।" ରାଜା କହିଲେ ।

ରାତିରେ ଅମାତ୍ୟ ଜ୍ୟୋତିଷଙ୍କୁ ଭେଟି କହିଲେ, "ଆଜ୍ଞା, ଆପଣ ଯଦି ମୁଁ ମିଛ କହୁଛି ବୋଲି କହିବେ, ତେବେ ମୋ କଥା ସରିଲା ।" ସେ ହଜାରେ ମୁଦ୍ରା ଧରାଇ ଦେଲେ ।

ପରଦିନ ଜ୍ୟୋତିଷ ଆସି ରାଜାଙ୍କୁ କହିଲେ, "ଛାମୁ ! ଅମାତ୍ୟ ସତ କହୁଛନ୍ତି ।"

"ଏ ଲୋକକୁ କାରାରୁଦ୍ଧ କର !" ରାଜା ଜ୍ୟୋତିଷଙ୍କ ଆଡ଼େ ହାତ ଦେଖାଇ ଦରବାରୀ ସିପାହୀମାନଙ୍କୁ ଆଦେଶ ଦେଲେ ।

"ମୋର ଅପରାଧ ?" ଆଶ୍ଚର୍ଯ୍ୟ ହୋଇ ଜ୍ୟୋତିଷ ପଚାରିଲେ ।

"ଯିଏ ଉତ୍କୋଚ ନେଉଛନ୍ତି ବୋଲି ଅମାତ୍ୟ ଅଭିଯୋଗ କରୁଥିଲେ, ସେ ବ୍ୟକ୍ତି ଆପଣ !", ରାଜା ଜଣାଇ ଦେଲେ ।





# ବୋକାମି ଟିକସ୍

ଦୁର୍ଗାପ୍ରସାଦ ଶୁଣିଥିଲା କି ଉତ୍ତର ଦିଗରେ ଗାଁଟିଏ ଅଛି ଯେଉଁ ଗାଁର ପ୍ରାୟ ସବୁ ବାସିନ୍ଦା ହେଲେ ଅତ୍ୟନ୍ତ ସରଳ। ବୋକା କହିଲେ ଅତ୍ୟୁକ୍ତି ହେବ ନାହିଁ। ତେବେ ସେମାନେ ଚାଷବାସ କରି ଭଲରେ ଚଳନ୍ତି। କାହାରି ଅଭାବ ନାହିଁ।

ଦୁର୍ଗାପ୍ରସାଦ ନିଜେ ଅଭାବଗ୍ରସ୍ତ ଲୋକ। ସେ ଠିକ୍ କଲା, ସେଇ ଗାଁରେ ଯାଇ କୌଣସି ବେପାର ଆରମ୍ଭ କରିବ। ସାଥିରେ ତା'ର ବେକାର ଶଳାଟିକୁ ନେଇଗଲା। ଗାଁଠୁଁ ଟିକିଏ ଘୁଡ଼ ଗୋଟାଏ ସ୍ଥାନରେ ସେ ସାନ ଘରଟିଏ ତୋଳିଲା। ସେତିକରେ ତା'· ପୁଞ୍ଜି ସରି ଆସିଲା। ବେପାର କରିବା ପାଇଁ ଅଧିକା କିଛି ଟଙ୍କା କିପରି ପାଇବ, ସେଇ ଚିନ୍ତା କରୁଥାଏ।

ଏହା ଭିତରେ ସେ ଗାଁର ଲୋକଙ୍କ ସହ ସିଏ ପେଢକ ମିଶିଥାଏ, ସେଥିରୁ ସେ ଗୋଟାଏ ବିଷୟରେ ନିଶ୍ଚିତ ହୋଇ ଯାଇଥାଏ। ସେ ଲୋକେ ବଡ଼ ସରଳ ବିଶ୍ୱାସୀ। କିନ୍ତୁ ସଙ୍ଗେ ସଙ୍ଗେ ନିଜ ନିଜର ଆତ୍ମସମ୍ମାନ ବିଷୟରେ ବଡ଼ ସଚେତନ। କେହି କିଛି ଭୁଲ୍ କରିଛନ୍ତି ବୋଲି ଧରା ପଡ଼ିବାକୁ ଚାହାନ୍ତି ନାହିଁ। ସମସ୍ତେ ନିଜ ନିଜକୁ ବେଶ୍ ଚତୁର ବୋଲି ମନେ କରନ୍ତି ବା ଅନ୍ୟମାନଙ୍କୁ ସେହିପରି ଧାରଣା ଦେବାକୁ ଚେଷ୍ଟା କରନ୍ତି।

ଦିନେ ସେ ଗାଁ ବାଟେଦେଇ ଯାଉଥାଏ, ହାତରେ ଧରିଥାଏ ମାଟିରେ ତିଆରି ଗୋଟାଏ ନକଲି ଆତ। ତାହା ଦେଖି ଗୋବିନ୍ଦ ବୋଲି ଜଣେ ଯୁବକ ପଚାରିଲା, "ତମେ ଏ ଅସମୟରେ ଆତ ପାଇଲ କେଉଁଠୁଁ?"

"ମୋ ବାଡ଼ି ପଛପଟେ ଆମ୍ବ ଗଛରେ ତ ବର୍ଷସାରା ଆତ ଫଳୁଥାଏ!" ଦୁର୍ଗାପ୍ରସାଦ ସ୍ୱାଭାବିକ କଣ୍ଠରେ ଉତ୍ତର ଦେଲା।

ସୁରେନ୍ଦ୍ରନାଥ

"ଆମ୍ବ ଗଛରେ ଆଉ? ପୁଣି ବର୍ଷସାରା ଫଳୁଥାଏ! ତମେ କହୁଛ କ'ଣ?" ଆଶ୍ଚର୍ଯ୍ୟ ହୋଇ ଗୋବିନ୍ଦ ପଚାରିଲା ।

"ଠିକ୍ କହୁଛି । ଜଣେ ବାବାଜୀଙ୍କ ଆଶୀର୍ବାଦରୁ ଏହା ସମ୍ଭବ ହୋଇଛି ।" ଏହା କହି ଦୁର୍ଗାପ୍ରସାଦ ଚାଲିଗଲା ।

"ବାବୁ, ରୁହ, ରୁହ । ବାବାଜୀ ତ ତେବେ ତମକୁ ଆହୁରି କେତେ ଆଶ୍ଚର୍ଯ୍ୟ କଥା ଶିଖାଇଥିବେ ବା କିଛି କରି ଯାଇଥିବେ । ମୋତେ କୁହ ।" ଗୋବିନ୍ଦ ବ୍ୟଗ୍ର ହୋଇ କହିଲା ।

"ମୋର ସମୟ ନାହିଁ ।" ଏହା କହି ଦୁର୍ଗାପ୍ରସାଦ ଚାଲିଗଲା ।

ଗୋବିନ୍ଦ କିଛି ସମୟ ପରେ ମାଧବସିଂହକୁ ଭେଟିଲା । ମାଧବସିଂହ କହିଲା, "ଆରେ ଗୋବିନ୍ଦ, ମୋ ସାଙ୍ଗରେ ଚାଲ । ଦୁର୍ଗାପ୍ରସାଦର ବାଡି ପଛପଟେ ତୋତେ ଗୋଟାଏ ଅଦ୍ଭୁତ ଜିନିଷ ଦେଖାଇବି ।"

"ଆଉ ଫଳୁଥିବା ଆମ୍ବଗଛ ତ?" ଗୋବିନ୍ଦ ପଚାରିଲା ।

"ଆରେ ନାହିଁ, ନାହିଁ । ତା' ବାଡ଼ି ପଛରେ ଗୋଟାଏ ନାଗସାପ ଅଛି । ତାକୁ ଜୁହାର କଲେ ସେ ଆଶୀର୍ବାଦ କରୁଛି ।" ମାଧବସିଂହ କହିଲା ।

"ବଡ଼ ଆଶ୍ଚର୍ଯ୍ୟ କଥା ତ! ତା' ବାଡ଼ିରେ କୌଣସି ଯାଦୁ ଅଛି ବୋଲି ମନେ ହୁଏ । ଏମିତି କଥା ତ କେବେ ଶୁଣା ନଥିଲା କି ଦେଖା ନଥିଲା!" ଗୋବିନ୍ଦ ମନ୍ତବ୍ୟ ଦେଲା ।



ଛାତ ଉପରେ ସେମାନଙ୍କୁ ଦେଖି ପକାଇଲେ ସୁଦାମ ଦାସ । "ଶୁଣିଲଣି ? ସେଇ ଯେଉଁ ନୂଆ ଘର କରି ରହିଛି ଦୁର୍ଗାପ୍ରସାଦ—ତା' ବାଡ଼ରେ ଗୋଟାଏ ପାରିଜାତ ଜାତିର ଗଛ ଅଛି । ଦିନବେଳେ ତାହା ଶୋଇଯାଏ । ରାତିହେଲେ ଉଠି ଠିଆ ହୋଇ ପହରା ଦିଏ । ସେତିକି ନୁହେଁ, ତା' ପତ୍ର ତୋଳିଲେ ଗଛଟି କାନ୍ଦେ । ତା' ଦେହରେ ହାତ ବୁଲାଇ ଦେଲେ ସେ ହସେ । କିସ ପୁଣି ଦେଖା ନଯାଏ ବଞ୍ଚି ରହିଥିଲେ ମହୀରେ !" ସୁଦାମ ଦାସ କହିଲେ ।

ସେମାନଙ୍କ ସହ ଯୋଗଦେଲେ ସୁଧୀର ଅବଧାନେ । ସେ କହିଲେ, "ଦୁର୍ଗାପ୍ରସାଦ ଘରେ କୁଆଡ଼େ ଗୋଟାଏ ଯାଦୁ ଝାଡ଼ୁ ଅଛି, ସେ ଗୋଟିକ ଆପେ ଆପେ ଘର ଓଳାଇ ପକାଏ !" କ୍ରମେ ଦଶଜଣ ଗ୍ରାମବାସୀ ଏକଠି ହେଲେ । ପ୍ରତ୍ୟେକେ ଦୁର୍ଗାପ୍ରସାଦର ଘର ସମ୍ପର୍କରେ ଗୋଟିଏ ଗୋଟିଏ ଅଦ୍ଭୁତ ଖବର ଶୁଣିଥିଲେ । ସମସ୍ତଙ୍କୁ ଖବର ଦେବାଲୋକ ଖୋଦ ଦୁର୍ଗାପ୍ରସାଦ ।

"ଚାଲ, ଥରେ ଦେଖି ଆସିବା ।" ଏ ବିଷୟରେ ସମସ୍ତେ ଏକମତ ହେଲେ ।

ଦୁର୍ଗାପ୍ରସାଦର ଘର ହତାରେ ସମସ୍ତେ ସଙ୍କୋଚ ସହକାରେ ପଶିଲେ ଓ କବାଟରେ ଶବ୍ଦ ଦେଲେ । ଦୁର୍ଗାପ୍ରସାଦର ଶଳା କବାଟ ଖୋଲିଦେଲା ।

"ଆପଣମାନେ କୁଆଡ଼େ ଆସିଲେ ?" ଯୁବକଟି ପଚାରିଲା ।





ଯାଉଛୁଁ ? ଖାଲି ଦେଖି ଦେବୁଁ ।" ସେମାନେ ବୁଝାଇଲେ ।

"ବାବୁମାନେ, ମୁଁ କହୁଛି ଏମିତି କିଛି ଚିଜ ନାହିଁ । ଯଦି ସନ୍ଦେହ ହେଉଛି, ତେବେ ଦେଖନ୍ତୁ ।" ଏହା କହି ଯୁବକ ସେମାନଙ୍କୁ ଘର ଭିତରେ ଓ ବାହାରେ ବୁଲାଇ ଦେଖାଇଲା ।

ସେମାନେ ମୁହଁ ଶୁଖାଇ ଫେରିଲେ । ବାଟରେ ପୁଣି ଦୁର୍ଗାପ୍ରସାଦ ସହ ଭେଟ ହୋଇଗଲା ।

"ହଇହେ ଦୁର୍ଗାପ୍ରସାଦ, ତମେ ଆମକୁ ସତକଥା କହୁଥିଲଟି ?" ମାଧବସିଂହ ପଚାରିଲେ ।

"ସତ କପର କହିଥାନ୍ତି ? ମୁଁ ପରା ରାଜାଙ୍କ ନିର୍ଦ୍ଦେଶରେ କାମ କରୁଥିଲି !" ଦୁର୍ଗାପ୍ରସାଦ ଜଣାଇଲା ।

"ରାଜାଙ୍କ ନିର୍ଦ୍ଦେଶରେ ବୋଇଲେ ?" ସୁଦାମ ଦାସ ପଚାରିଲେ ।

"କଥା କ'ଣ କି, ରାଜା ବୋକାଙ୍କ ଉପରେ ଟିକସ୍ ବସାଇବେ ବୋଲି ଭାବୁଛନ୍ତି । ମୋ ଉପରେ ଦାୟିତ୍ୱ ଦିଆ ହୋଇଥିଲା କିଏ କେତେଦୂର ବୋକା ସ୍ଥିର କରି ଜଣାଇବା ।" ଦୁର୍ଗାପ୍ରସାଦ କହିଲା ।

"ଓ, ଏମିତି କଥା । ତମେ ବାବୁ କେମିତି ସ୍ଥିର କଲ ?" ସମସ୍ତେ ଉତ୍ସୁକ ହୋଇ ପଚାରିଲେ ।

"ତମ ଘର ପଛପଟେ ସେ ଆଉ ଫଳୁଥିବା ଆମ୍ବଗଛ, ଆଶୀର୍ବାଦ ଦେଉଥିବା ନାଗସାପ, ରାତିରେ ଶୋଇ ଦିନରେ ପହରା ଦେଉଥିବା ପାରିଜାତ ଗଛ ଏବଂ ଘର ଭିତରେ ଥିବା ଯାଦୁ ଝାଡୁ ଥରେ ଦେଖିଦେଇ ଚାଲିଯିବା ।" ଆଗନ୍ତୁକମାନେ କହିଲେ ।

"ଆପଣମାନେ କ'ଣ କହୁଛନ୍ତି ବୁଝିପାରୁ ନାହିଁ । ଏଭଳି ଅଜବ ଚିଜମାନ ତ ଆମ ଘରେ ନାହିଁ ।" ଦୁର୍ଗାପ୍ରସାଦର ଶଳା କହିଲା ।

"ବାବୁ, ତମେ ଆମକୁ ଲୁଚାଇଲେ କ'ଣ ହେବ ? ଆମେ ଖୋଦ୍ ଦୁର୍ଗାପ୍ରସାଦଠୁଁ ଶୁଣିଛୁଁ । ଆମେ କ'ଣ କିଛି ନେଇ

"ମୁଁ ସବୁ ଗ୍ରାମବାସୀଙ୍କୁ ଅଜବ କଥାମାନ କହୁଛି । ଅଧିକାଂଶ ମୋ କଥାରେ ପରତେ ଯିବେ ନାହିଁ କି ଦେଖିବାକୁ ଯିବେ ନାହିଁ । ଯେଉଁମାନେ ଯିବେ, ସେମାନେ ବୋକା । ଯେଉଁମାନେ ମୋ ଶଳା ମନା କରିବା ସତ୍ତ୍ୱେ ଘର ଭିତରେ ବାହାରେ ଦେଖିବେ, ସେମାନେ ମହା ବୋକା । ସେହି ଅନୁସାରେ କର ଧାର୍ଯ୍ୟ ହେବ ।" ଦୁର୍ଗାପ୍ରସାଦ ବୁଝାଇ ଦେଲା ।

ସେ ଦଶଜଣ ସ୍ତବ୍ଧ ହୋଇ ରହିଲେ । ଗୋବିନ୍ଦ ପଚାରିଲା, "ଦୁର୍ଗାପ୍ରସାଦ, ତମେ କ'ଣ ବର୍ତ୍ତମାନ ନିଜ ଘରକୁ ଯାଉଛ ?"

"ନା, ବଜାରକୁ ଯାଉଛି । ଘରକୁ ଫେରିବାକୁ ଡେରି ହେବ ।" ଏହା କହି ଦୁର୍ଗାପ୍ରସାଦ ଚାଲିଗଲା ।

ଦଶଜଣଯାକ ଯାଇ ପୁଣି ଦୁର୍ଗାପ୍ରସାଦ ଘରେ ପହଞ୍ଚିଲେ ଓ ତା' ଶଳାକୁ କହିଲେ, "ବାବୁ, ଆମେ ଆସି ତମକୁ ଭେଟିଥିଲୁଁ ଏବଂ ତମେ ମନା କରିବା ସତ୍ତ୍ୱେ ତମ ଘର ଭିତରେ ବାହାରେ ସେସବୁ ଯାଦୁ ଚିଜର ସନ୍ଧାନ କରିଥିଲୁଁ, ଏକଥା ତମେ ଦୁର୍ଗାପ୍ରସାଦଙ୍କୁ ଜଣାଇବ ନାହିଁ ।" ଏହା କହି ସେମାନେ ତାକୁ କିଛି ଟଙ୍କା ଦେଲେ ।

"ନା, ନା, ଟଙ୍କା କିପରି ନେବି ? ତା'ଛଡ଼ା ଭିଣୋଇ ପାଖରୁ କୌଣସି କଥା ଲୁଚାଇବି ବା କିପରି ? ଭିଣୋଇଠୁଁ ବଳି ନିଜର ବନ୍ଧୁ ଆଉ କେହି ହୋଇପାରେ ?" ଦୁର୍ଗାପ୍ରସାଦର ଶଳା କହିଲା ।

"ବାବୁ, ତମେ ଠିକ୍ କହୁଛ ଯେ, ତେବେ ଆମ କଥା ରଖ!" ଏହା କହି ସେମାନେ ଆହୁରି ଅଧିକ କିଛି ଟଙ୍କା ଦେଲେ ।

ଏହାପରେ ଆହୁରି କେତେଜଣ ବି ଆସି ଟଙ୍କା ଦେଲେ—ସେଇ ସର୍ତ୍ତରେ ।

ମଝି ରାତକୁ ଦୁର୍ଗାପ୍ରସାଦ ଲେଉଟି ଆସିଲା । ତା' ଶଳା କହିଲା, "ଯଥେଷ୍ଟ ପୁଞ୍ଜି ମିଳି ଯାଇଛି । କି ବେପାର କରିବ, ସେଇଆ ସ୍ଥିର କର ।"





# ପଶ୍ଚାତ୍ତାପ

ପ୍ରାଚୀନ କାଳରେ ଥରେ ବୋଧିସତ୍ତ୍ୱ କୋଶଳର ରାଜା ଥା'ନ୍ତି । ତାଙ୍କ ପୁତ୍ର ସତ୍ୟସେନ ପ୍ରାପ୍ତବୟସ୍କ ହେବା ମାତ୍ରେ ସେ ତାଙ୍କୁ ଯୁବରାଜ ପଦରେ ଅଭିଷିକ୍ତ କରାଇଲେ । ସତ୍ୟସେନଙ୍କ ସ୍ତ୍ରୀ ଶମ୍ବୁଲା ଦେବୀ ଥିଲେ ଅତ୍ୟନ୍ତ ସୁନ୍ଦରୀ, ଗୁଣଶୀଳା ଓ ପତିପରାୟଣା ।

ଦୁର୍ଭାଗ୍ୟବଶତଃ କିଛିଦିନ ପରେ ଜଣାପଡ଼ିଲା ଯୁବରାଜ କୁଷ୍ଠରୋଗଗ୍ରସ୍ତ ହୋଇଛନ୍ତି । ବିଭିନ୍ନ ଦେଶରୁ ଅନେକ ଚିକିତ୍ସକ ଆସି ଚିକିତ୍ସା କରିଲେ କିନ୍ତୁ କୌଣସି ଫଳ ହେଲା ନାହିଁ । ଶେଷକୁ ଯୁବରାଜ ସେହିପରି ଅବସ୍ଥାରେ ସମାଜରେ ବାସ କରିବାକୁ କୁଣ୍ଠାବୋଧ କଲେ । ତେଣେ ସେ ପିତାଙ୍କର ଆଜ୍ଞା ନେଇ ଲୋକାଳୟଠୁଁ ଦୂରକୁ ଯାଇ ଜଙ୍ଗଲରେ ବାସ କରିବାର ସିଦ୍ଧାନ୍ତ କଲେ । ସମ୍ବୁଲା ମଧ୍ୟ ତାଙ୍କ ସହିତ ଯିବାକୁ ମନସ୍ଥ କଲେ । ସତ୍ୟସେନ ଜଙ୍ଗଲର ସମସ୍ତ ବିପଦ ଓ କଷ୍ଟମୟ ଜୀବନ କଥା କହି ତାଙ୍କୁ ଯେତେ ନିବର୍ତ୍ତାଇଲେ ମଧ୍ୟ ସେ କିଛି ଶୁଣିଲେ ନାହିଁ ଓ ସ୍ୱାମୀଙ୍କ ସହିତ ବନକୁ ଗମନ କଲେ ।

ବନ ମଧ୍ୟରେ ଫୁଲଫଳରେ ଭରା ବୃକ୍ଷ ଓ ପୁଷ୍କରିଣୀ ଥିବା ସ୍ଥାନଟିଏ ବାଛି ସେଇଠାରେ କୁଟୀର କରି ଦୁହେଁ ବାସ କଲେ । ପ୍ରାତଃକାଳରୁ ସନ୍ଧ୍ୟା ପର୍ଯ୍ୟନ୍ତ ଶମ୍ବୁଲା ସ୍ୱାମୀସେବା ଓ ଗୃହ କାର୍ଯ୍ୟରେ ଲାଗି ରହୁଥା'ନ୍ତି ।

ଦିନେ ଶମ୍ବୁଲା ଫଳ ସଂଗ୍ରହ କରୁ କରୁ ବହୁତ ଦୂରକୁ ଚାଲିଗଲେ । ସେ ଦେଖିଲେ ବନ ମଧ୍ୟରେ ଏକ ସୁନ୍ଦର ସରୋବର । ତା'ର ଜଳ ଅତି ମଧୁର, ସ୍ୱଚ୍ଛ ଓ ଥଣ୍ଡା । ସେ ସେଠାରେ ସ୍ନାନ କଲେ । ସ୍ନାନ କରିସାରି ଜଳରୁ ବାହାରକୁ ଆସି ଦେଖିଲେ ତାଙ୍କର ଶରୀର ଶୁଦ୍ଧ ସୁବର୍ଣ୍ଣ ପରି ଝଟକୁଛି ।

ସରୋବରରୁ ପାଣି ଧରି ଫେରିବା ରାସ୍ତାରେ ଜଣେ ଭିଲ୍ ସର୍ଦ୍ଦାର ତାଙ୍କର ସୌନ୍ଦର୍ଯ୍ୟ ଦେଖି ମୁଗ୍ଧ ହୋଇ ଶମ୍ଭୁଲାଙ୍କୁ ବିବାହ କରିବାର ଇଚ୍ଛା ପ୍ରକାଶ କଲା । ଶମ୍ଭୁଲା ସେ କଥାରେ କର୍ଣ୍ଣପାତ ନକରିବାରୁ ଭିଲ୍ ତାଙ୍କର ପଥରୋଧ କଲା । ଶମ୍ଭୁଲା ଦେବୀ ରାଗିଯାଇ କହିଲେ, "ଆରେ ପାପୀ, ତୋ'ର ସର୍ବନାଶ ହେଉ ।" ଏତକ କହି ତା' ଉପରେ ସେଇ ସରୋବରର ପାଣି ଛିଞ୍ଚିଦେଲେ । ତତ୍‌କ୍ଷଣାତ୍ ସେ ସେଠାରେ ମୂର୍ଚ୍ଛା ହୋଇ ପଡ଼ିଗଲା ।



ଶମ୍ଭୁଲା ବିଳମ୍ବରେ ଫେରିବାରୁ ସତ୍ୟସେନ କ୍ରୋଧାନ୍ଧ ହୋଇ ବିଳମ୍ବର କାରଣ ପଚାରିଲେ । ଶମ୍ଭୁଲା ସ୍ୱାମୀଙ୍କୁ ସମସ୍ତ କଥା କହିଲେ । କିନ୍ତୁ ସ୍ୱାମୀ ସେଥିରେ ବିଶ୍ୱାସ ନକରି ସ୍ତ୍ରୀକୁ ଘୃଣାପୂର୍ବକ କହିଲେ, "କଳ୍ପନା କରି ଗଳ୍ପ ତିଆରି କରିବାରେ ସ୍ତ୍ରୀଲୋକମାନେ ଦକ୍ଷ । ଠିକ୍ ଅଛି । ତମେ ସ୍ୱେଚ୍ଛାପୂର୍ବକ ଯୁଆଡ଼େ ସିଆଡ଼େ ଯାଇପାର ।"

ସ୍ୱାମୀଙ୍କ ମୁହଁରୁ ଏପରି କଥା ଶୁଣି ଶମ୍ଭୁଲା ବହୁତ ଦୁଃଖ କଲେ । ସେ ଭଗବାନଙ୍କ ନାମ ନେଇ କହିଲେ, "ସ୍ୱାମୀ, ଯଦି ମୋ କଥା ସତ ହୋଇଥାଏ ତେବେ ତମେ ଏ ବ୍ୟାଧିରୁ ମୁକ୍ତ ହୋଇଯିବ, ଯଦି ମୁଁ ମିଥ୍ୟା କଥା କହିଥାଏ ତେବେ ଏ ବ୍ୟାଧି ମୋତେ ବି ଆକ୍ରମଣ କରିବ ।" ଏକଥା କହି ସେ ଆଣିଥିବା ପାଣି କିଛି ତାଙ୍କ ଉପରେ ଛିଞ୍ଚି ଦେଲେ ।

ଜଳର ସ୍ପର୍ଶ ପାଇବା ମାତ୍ରେ ଆଶ୍ଚର୍ଯ୍ୟ ଭାବରେ ସେ ବ୍ୟାଧିମୁକ୍ତ ହେଲେ । ସଙ୍ଗେ ସଙ୍ଗେ ଶରୀର ଅପୂର୍ବ ଶ୍ରୀ ଧାରଣ କଲା । କିନ୍ତୁ ସେ ପତ୍ନୀଙ୍କର ପତିବ୍ରତା ଅପେକ୍ଷା ନିଜର ସୁନ୍ଦର ଶରୀର ଦେଖି ବେଶି ଆନନ୍ଦିତ ଓ ମୁଗ୍ଧ ହେଲେ । ବ୍ୟାଧିମୁକ୍ତ ହେବା ମାତ୍ରେହିଁ ତାଙ୍କ ମନରେ ନାନା ଆଶା, ଆକାଂକ୍ଷା ଜାଗି ଉଠିଲା । ସେ ନିଜ ରାଜ୍ୟରେ ପହଞ୍ଚିଲେ । ରାଜା ସମ୍ବାଦ ପାଇ ଅତି ଆନନ୍ଦରେ ସ୍ୱୟଂ ପୁତ୍ରକୁ ସ୍ୱାଗତ କରିବାକୁ ଆସିଲେ ।

ପୁତ୍ରର ସମ୍ପୂର୍ଣ୍ଣ ଆରୋଗ୍ୟ ଓ ସୁନ୍ଦର ସ୍ୱାସ୍ଥ୍ୟ ଦେଖି ରାଜାଙ୍କର ଆନନ୍ଦର ସୀମା ନାହିଁ । ଶମ୍ଭୁଲାଙ୍କ ପରି ବୋହୂ ପାଇ ସେ ନିଜକୁ

ଭାଗ୍ୟବାନ୍ ମନେ କଲେ । ଦିନ, ମୁହୂର୍ତ୍ତ ଠିକ୍ କରି ସେ ସତ୍ୟସେନଙ୍କର ଅଭିଷେକ କରାଇଲେ । ଶମ୍ବୁଲା ତାଙ୍କର ପାଟରାଣୀ ହେଲେ । ତା'ପରେ ରାଜା ବାନପ୍ରସ୍ଥ ଆଚରଣ କଲେ ।

ଶମ୍ବୁଲା ପାଟରାଣୀ ହେଲେ ମଧ୍ୟ ରାଜା ବେଶି ସମୟ ଅନ୍ୟ ରାଣୀମାନଙ୍କ ଗହଣରେ କଟାଉଥା'ନ୍ତି । ସେଥିପାଇଁ ଶମ୍ବୁଲା ଦୁଃଖିତ ହେଉଥା'ନ୍ତି ।

ଦିନେ ପୁରୁଣା ରାଜା ଶମ୍ବୁଲାଙ୍କୁ ଦେଖା କରି କହିଲେ, "ବୋହୂ, ତୁ କାହିଁକି ଏତେ ଦୁର୍ବଳ ହୋଇ ପଡ଼ୁଛୁ ?"

ଶମ୍ବୁଲାଙ୍କ ଆଖିରୁ ଲୁହ ଝରିପଡ଼ିଲା; ସେ କହିଲେ, "ପତିର ପ୍ରେମହିଁ ପତ୍ନୀର କାମ୍ୟ । ତାହାର ଅଭାବରେ ଏ ସମସ୍ତ ଭୋଗବିଳାସ ପୂର୍ଣ୍ଣ ଜୀବନ ମୋ ପାଇଁ ତୁଚ୍ଛ । ସ୍ୱାମୀ ମୋ ଉପରେ ଖୁସି ନ ରହିଲେ ମୁଁ କିପରି ଖୁସି ହେବି ?"

ବୁଢ଼ା ରାଜା ପୁଅ ସତ୍ୟସେନଙ୍କୁ ଡାକି କହିଲେ, "ପୁଅ, କୃତଘ୍ନତାଠାରୁ ବଳି ପାପ ଆଉ ନାହିଁ । ତୁ ଯେତେବେଳେ ମହାବ୍ୟାଧି ଭୋଗୁଥିଲୁ ଓ ଲଜ୍ଜାରେ ବନକୁ ଚାଲିଗଲୁ ସେତେବେଳେ ଶମ୍ବୁଲାହିଁ ତୋ ସହିତ ଛାୟା ସଦୃଶ ରହି ସେବା କଲା । ତା'ର ପତିବ୍ରତା ଯୋଗୁ ତୁ ବ୍ୟାଧିମୁକ୍ତ ହେଲୁ । କିନ୍ତୁ ତୁ ଯେତେବେଳେ ଐଶ୍ୱର୍ଯ୍ୟର ଅଧିକାରୀ ହେଲୁ, ସେତେବେଳେ ସେହି ଦେବୀରୂପିଣୀ ସ୍ତ୍ରୀକୁ ଭୁଲିଗଲୁ ? ଏ ରାଜ୍ୟ ଓ ବୈଭବ କାହାକୁ ବି ମିଳି ଯାଇପାରେ । କିନ୍ତୁ ପତିବ୍ରତା ପତ୍ନୀ କେବଳ ଭାଗ୍ୟବାନ୍‌ଙ୍କୁହିଁ ମିଳିଥାଏ । ଏପରି ପତ୍ନୀକୁ ତୁ କଷ୍ଟ ଦେଲେ ତୋରହିଁ କଷ୍ଟ ଓ ଅମଙ୍ଗଳ ହେବ ଏକଥା ମନେରଖ ।"

ପିତାଙ୍କ କଥା ଶୁଣି ସତ୍ୟସେନ୍ ପଶ୍ଚାତାପ କଲେ ଓ ରାଣୀ ଶମ୍ବୁଲାଙ୍କଠାରୁ କ୍ଷମା ମାଗିଲେ । ତା'ପରେ ସେ ତାଙ୍କ ସହିତ ଆନନ୍ଦରେ ରହିଲେ ।






ଭାରତ-କାହାଣୀ

# ବ୍ରିଟିଶ୍ ଯୁଗର ଆରମ୍ଭ

ପଞ୍ଚଦଶ ଶତାବ୍ଦୀ ବେଳକୁ ଭାରତବର୍ଷ ଗୋଟିଏ ସୁନା ଖଣି—ୟୁରୋପରେ ଏହି ଭଳି ଧାରଣା ପ୍ରଚଳିତ ହୋଇ ଯାଇ ଥାଏ । ଭାରତକୁ ପଥ ଆବିଷ୍କାର କରିବାକୁ ବାହାରି ଇଟାଲୀୟ ନାବିକ କଲମ୍ବସ ୧୪୯୮ରେ ଆମେରିକାରେ ପହଞ୍ଚିଲେ ।

ସେହି ବର୍ଷ ପର୍ତ୍ତୁଗୀଜ୍ ନାବିକ ଭାସ୍କୋ-ଡା-ଗାମା ଭାରତରେ ଆସି ପହଞ୍ଚିଲେ । କାଲିକଟର ହିନ୍ଦୁ ରାଜା ଜାମୋରିନ ତାଙ୍କୁ ସ୍ୱାଗତ କଲେ । ଭାସ୍କୋ-ଡା-ଗାମାହିଁ ୟୁରୋପ ଓ ଭାରତ ଭିତରେ ପ୍ରଥମେ ସିଧାସଳଖ ଜଳପଥ ଫିଟାଇଲେ । ତାଙ୍କ ପରେ ପରେ ଆସିଲେ ଡଚ୍, ଡେନ୍, ଇଂରେଜ୍ ତଥା ଫରାସୀମାନେ ।





ଅନ୍ୟମାନେ ହଟିଗଲେ, କିନ୍ତୁ ବହୁଦିନ ଯାଏ ଇଂରେଜ୍ ଓ ଫରାସୀ ଭିତରେ ପ୍ରବଳ ପ୍ରତିଯୋଗିତା ଲାଗି ରହିଲା । ମାରାଠାମାନେ ଏ ବିଦେଶୀଙ୍କୁ ତଡ଼ିବା ନିମନ୍ତେ ଭାରତୀୟ ରାଜାମାନଙ୍କୁ ଏକତ୍ର କରିବାକୁ ଚେଷ୍ଟା କଲେ, କିନ୍ତୁ ସେଥିରେ ସଫଳ ହେଲେ ନାହିଁ । ବଣିକ ଭାବରେ ଆସି ଉଭୟ ଇଂରେଜ୍ ଓ ଫରାସୀମାନେ ଭାରତର ଶାସକ ହେବାକୁ ତତ୍ପର ହେଲେ ।




ଡୁପ୍ଲେଙ୍କ ନେତୃତ୍ୱରେ ଦକ୍ଷିଣ ଭାରତର ପଣ୍ଡିଚେରୀକୁ କେନ୍ଦ୍ର କରି ଫରାସୀମାନେ ନିଜ ଆସନ ଦୃଢ଼ କରିବାକୁ ଲାଗିଥାନ୍ତି । ୧୭୪୦ରେ ୟୁରୋପରେ ଯୁଦ୍ଧ ଲାଗିଲା । ଇଂଲଣ୍ଡ ଓ ଫ୍ରାନ୍ସ ପରସ୍ପର ବିରୋଧୀ ପକ୍ଷରେ ଥା'ନ୍ତି । ସେ ଯୁଦ୍ଧର ପ୍ରଭାବରେ ଦକ୍ଷିଣ ଭାରତ ଉପକୂଳ ବର୍ତ୍ତୀ ସମୁଦ୍ରରେ ଫରାସୀ ଓ ଇଂରେଜ ଜାହାଜମାନଙ୍କ ଭିତରେ ପରସ୍ପର ଆକ୍ରମଣ ଚାଲିଲା ।

କିନ୍ତୁ ରବର୍ଟ କ୍ଲାଇଭ୍ ନାମକ ଯୁବକଙ୍କ ଜରିଆରେ ଇଂରେଜ୍‌ମାନଙ୍କ ପାଇଁ ଆସୁଥିଲା ଶୁଭଦିନ । ବାଲକ ଭାବରେ ସେ ଅବାଧ୍ୟ ଥିଲେ । ଥରେ ଘର ଛାଡ଼ି ପଳାଇଯାଇ ସେ ଇଷ୍ଟ୍ ଇଣ୍ଡିଆ କୋମ୍ପାନିରେ ଜଣେ କିରାଣୀ ଭାବରେ ଯୋଗ ଦେଲେ । କୋମ୍ପାନି ତାଙ୍କୁ ମାଡ୍ରାସରେ ପ୍ରତିଷ୍ଠିତ ସେମାନଙ୍କର ସେଣ୍ଟ୍ ଜର୍ଜ ଦୁର୍ଗକୁ ପଠାଇଦେଲେ ।





ବଙ୍ଗଦେଶର ଯୁବକ ନବାବ୍ ସିରାଜୁଦୌଲା ଇଂରେଜ୍‌ମାନଙ୍କ ବର୍ଦ୍ଧିଷ୍ଣୁ ପ୍ରଭାବ ରୋକିବାକୁ ଦୃଢ଼ ପ୍ରତିଜ୍ଞ ଥିଲେ । ସେ ତାଙ୍କ ରାଜଧାନୀ ମୁର୍ଶିଦାବାଦ୍‌ରୁ ଇଷ୍ଟ୍ ଇଣ୍ଡିଆ କୋମ୍ପାନିର କେନ୍ଦ୍ରସ୍ଥଳୀ କଲିକତା ଆକ୍ରମଣ କରି ତାକୁ ଦଖଲ କରିନେଲେ । କୋମ୍ପାନିର ଦୁର୍ଗ ଫୋର୍ଟ ଉଇଲିୟମ୍ ତାଙ୍କ ହାତରେ ପଡ଼ିଲା ।

କଲିକତା ହରାଇ ଭାରତରେ ଥିବା ଇଂରେଜ୍‌ମାନେ ଭୀଷଣ ହତାଶ ହୋଇଗଲେ। କ୍ଲାଇଭ୍ ଗୋଟିଏ ସୈନ୍ୟଦଳ ଧରି କଲିକତା ପୁନର୍ଦଖଲ କରିବାକୁ ଗଲେ । ସେ ଫୋର୍ଟ ଉଇଲିୟମ୍ ନବାବ୍‌ଙ୍କ ସୈନ୍ୟଙ୍କଠାରୁ ଛଡ଼ାଇ ଆଣିଲେ । ସିରାଜୁଦ୍ଦୌଲା ଖବର ପାଇ ପହଞ୍ଚି ଯିବାରୁ ସେ ତାଙ୍କ ସହ ସନ୍ଧି କଲେ ।





କିନ୍ତୁ ସିରାଜୁଦ୍ଦୌଲା କଲିକତା ଛାଡ଼ି ଚାଲିଯିବା ମାତ୍ରେ କ୍ଲାଇଭ୍ ସିରାଜଙ୍କ ସେନାପତି ମିର୍ ଜାଫର୍ ସହ ଚକ୍ରାନ୍ତ କଲେ ଓ ତାଙ୍କୁ ନବାବ୍ ବନାଇବାର ପ୍ରତିଶ୍ରୁତି ଦେଲେ । ତା'ପରେ ସାମାନ୍ୟ ଆଳରେ ସେ ନବାବ୍‌ଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲେ । ପଲାସୀ ଯୁଦ୍ଧ କ୍ଷେତ୍ରରେ ମୀର୍ ଜାଫର୍ ନିଜ ସୈନ୍ୟଦଳକୁ ଯୁଦ୍ଧ କରିବାକୁ ହୁକୁମ ଦେଲେ ନାହିଁ ।

ଫଳରେ ନବାବ୍ ପରାଜିତ ହେଲେ । ତାଙ୍କୁ ବନ୍ଦୀ କରି ମିର୍ ଜାଫର୍‌ଙ୍କ ଲୋକେ ନିର୍ମମ ଭାବରେ ହତ୍ୟା କଲେ। ମୀର୍ ଜାଫର୍ ନବାବ୍ ଗାଦି ପାଇଲେ। କିନ୍ତୁ ଇଂରେଜ୍‌ମାନେ ତାଙ୍କର ସର୍ବସ୍ୱ ଲୁଣ୍ଠନ କରିବାକୁ ଲାଗିଲେ । କୋମ୍ପାନି ତାଙ୍କଠାରୁ କୋଟି କୋଟି ଏବଂ କ୍ଲାଇଭ୍ ବ୍ୟକ୍ତିଗତ ଭାବରେ ଲକ୍ଷ ଲକ୍ଷ ଟଙ୍କା ଆଦାୟ କରିବାକୁ ଲାଗିଲେ ।





ମୀରଜାଫର ଯେତେବେଳେ କୋମ୍ପାନିର ଅବିରତ ଦାବୀ ଆଉ ପୂରଣ କରି ପାରିଲେ ନାହିଁ, ସେତେବେଳେ ଇଂରେଜମାନେ ତାଙ୍କୁ ଗାଦିଚ୍ୟୁତ କରି ତାଙ୍କ ଜାମାତା ମୀର୍ କାଶିମ୍‌ଙ୍କୁ ନବାବ୍ କଲେ । କିନ୍ତୁ ସେ ସ୍ୱାଧୀନ ପ୍ରକୃତିର ଲୋକ ଥିଲେ ଓ ଇଂରେଜ୍‌ମାନଙ୍କ ପାଖରେ ମୁଣ୍ଡ ନୁଆଇଲେ ନାହିଁ । ଇଂରେଜ୍‌ଙ୍କ ସହ ତାଙ୍କର ଯୁଦ୍ଧ ହେଲା ।

ମୀର୍ କାଶିମ୍ ପରାସ୍ତ ହେଲେ । ସେ ଦିଲ୍ଲୀ ପଳାଇଯାଇ ସେଠାରେ ଦାରିଦ୍ର୍ୟ ଭିତରେ ମୃତ୍ୟୁ ବରଣ କଲେ । କ୍ଲାଇଭ୍ ଇଂଲଣ୍ଡ ଯାଇଥିଲେ । ସେଠାରେ ଲର୍ଡ ପଦବୀ ପାଇ ପୁଣି ଭାରତ ଆସିଲେ ଓ ମୋଗଲ୍ ସମ୍ରାଟଙ୍କଠାରୁ ବଙ୍ଗ, ବିହାର ଏବଂ ଓଡ଼ିଶାର ଦେଓ୍ୱାନି ହାସଲ୍ କଲେ । ନିଜେ ସେ ବହୁତ ଧନୀ ହୋଇଗଲେ ।








କ୍ଲାଇଭ ଜଣେ ବୀରର ସମ୍ମାନ ପାଇବାର ଆଶା କରି ଇଂଲଣ୍ଡ ଫେରିଗଲେ । କିନ୍ତୁ ଭାରତରେ ତାଙ୍କର ଦୁର୍ନୀତି, ବିଶ୍ୱାସଘାତକତା ଓ ନିଷ୍ଠୁର ଆଚରଣ ନିମନ୍ତେ ତାଙ୍କ ଦେଶବାସୀମାନେ ତାଙ୍କର ଭୀଷଣ ସମାଲୋଚନା କଲେ । ସେସବୁ ସହି ନପାରି ସେ ଛୁରୀକା ଦ୍ୱାରା ଆତ୍ମହତ୍ୟା କଲେ । ତେବେ ଭାରତରେ ବ୍ରିଟିଶ୍ ସାମ୍ରାଜ୍ୟର ମୂଳଦୁଆକୁ ସେ ଟାଣ କରି ଯାଇଥାନ୍ତି ।



# ବିଶ୍ୱାସୀ ଚାକର

ଗୋଟିଏ ଗାଁରେ ଅର୍ଜୁନ ସିଂ ନାମରେ ଜଣେ ଧନୀ ତଥା ମାନ୍ୟଗଣ୍ୟ ବ୍ୟକ୍ତି ଥା'ନ୍ତି । ବହୁତ ଦିନ ଧରି ତାଙ୍କ ଘରେ ଶରଭ ନାମରେ ଚାକରଟିଏ କାମ କରି ଥାଏ । ସେ ଥିଲା ଟିକିଏ କାଲ । ବହୁତ ଉଚ୍ଚସ୍ୱରରେ କିଛି ନ କହିଲେ ସେ ସବୁ କାମ ଓଲଟା କରି ଦେଉଥାଏ । ତଥାପି ମଧ୍ୟ ଅର୍ଜୁନ ସିଂ ତାକୁ ତଡ଼ି ନଦେଇ ସ୍ନେହରେ ରଖିଥା'ନ୍ତି ।

କିନ୍ତୁ ଅର୍ଜୁନ ସିଂଙ୍କ ପୁଅ ମାଧ ସିଂ ଚାକର କାଲ ଥିବା ଯୋଗୁ ମଝିରେ ମଝିରେ ତା' ଉପରେ ରାଗୁଥାଏ । କେବେ ଯଦି ଶରଭ ଶୁଣି ନ ପାରି କାମରେ କିଛି ଭୁଲ କଲା ତ ମାଧ, ପିତାଙ୍କ ପାଖକୁ ଯାଇ କହେ, "ବାପା, ଏ ଚାକରକୁ କିଛି କହିବାକୁ ହେଲେ ପାଟି କରି କରି ତଣ୍ଟି ଫାଟି ଯାଉଛି । ତା'ପରେ ତାକୁ ଦରମା ତ ଦିଆ ଯାଉଛି । ତେବେ ତା' ସ୍ଥାନରେ ଅନ୍ୟ ଚାକର କାହିଁକି ରଖୁ ନାହାନ୍ତି? କାହିଁକି ଯେ ତାକୁ ଏଠାରେ ରଖା ହୋଇଛି ମୁଁ ବୁଝିପାରୁ ନାହିଁ ।"

ଅର୍ଜୁନ ସିଂ ପୁଅକୁ ବୁଝାଇ କହିଲେ, "ପୁଅ, ଶରଭ କାଲ ଏକଥା ସମସ୍ତେ ଜାଣନ୍ତି । କିନ୍ତୁ ତା'ପରି ବିଶ୍ୱାସୀ ଓ ପ୍ରଭୁଭକ୍ତ ଚାକର ପାଇବା କଷ୍ଟ । ତା'ଛଡ଼ା ସେ ଅନେକ ଦିନ ଧରି ଆମ ପରିବାରରେ ରହି ଆସିଛି । ତାକୁ ବାହାର କରିଦେଇ ହେବନାହିଁ ।"

ଶରଭ ସର୍ବଦା ମାଧ ସିଂର ସବୁ ପ୍ରକାର ଯତ୍ନ ନିଏ, ସବୁ ପ୍ରକାର କାମ କରିଦିଏ, ତଥାପି ମାଧ ସିଂ ଶରଭକୁ ଦେଖିଲେ ରାଗରେ ଜଳିଯାଏ । ସବୁବେଳେ ତାକୁ ତଡିଦେବାକୁ ଚାହେଁ, କିନ୍ତୁ ବାପାଙ୍କ ଯୋଗୁ କିଛି କରି ପାରେନାହିଁ ।

ଶ୍ରୀମତୀ ଆଶାଲତା



ସେ ଗ୍ରାମରେ ଅନ୍ୟ ଘରେ ଚାକିରି କରିବା ପାଇଁ ଚେଷ୍ଟା କଲା କିନ୍ତୁ ପାଇଲା ନାହିଁ। ଓଲଟା ସମସ୍ତେ କହିଲେ, "ତୁ ତ ମହା ବଦମାସ୍। ଚୋରି ବା ସେପରି କିଛି ଅପରାଧ କରି ନଥିଲେ ମାଧ ସିଂ କାହିଁକି ତତେ ବାହାର କରି ଦେଇଥା'ନ୍ତା?"

ଚାକିରି ଯିବାରୁ ଶରଭର ମନ କଷ୍ଟ ଯେତେ ହୋଇ ନଥିଲା ଚୋରି ବା କୌଣସି ଅପରାଧ କରିଥିବାର ଦୋଷାରୋପ କରାଯାଇ ଥିବାରୁ ସେ ବଡ଼ ଦୁଃଖିତ ହେଲା। ତାକୁ ସ୍ଥାୟୀ ଚାକିରି ନ ମିଳିବାରୁ ସେ ମଜୁରି ଖଟି ପେଟ ପୋଷିଲା।

ଥରେ ଅର୍ଜୁନ ସିଂ ଜମିବାଡ଼ ଓ ଘରର ଦାୟିତ୍ୱ ପୁଅ ହାତରେ ଦେଇ ପତ୍ନୀଙ୍କୁ ନେଇ ତୀର୍ଥାଟନରେ ବାହାରିଗଲେ। ମାଧ ସିଂ ଏ ସୁଯୋଗ ପାଇ ପରଦିନହିଁ ଶରଭକୁ ଘରୁ ବାହାର କରିଦେଲା।

ବିଚାରା ଶରଭ ତ ବହୁତ ସରଳ ଓ ସାଧାସିଧା ଲୋକ। ସେ ବୁଝିପାରିଲା ନାହିଁ କେଉଁ କାରଣରୁ ମାଧ ସିଂ ତାକୁ ତଡ଼ିଦେଲା। କିନ୍ତୁ ସେ ଜାଣେ ମାଧ ସିଂକୁ କିଛି ପଚାରିଲେ ସେ ଟିକିଏ ଟିକିଏ କଥାରେ ବିଗିଡ଼ି ଯାଏ ଓ ରାଗିଯାଇ ଯାହା ଇଚ୍ଛା କରେ। ତେଣୁ ଭୟରେ ସେ ଆଉ କିଛି ତାକୁ ନ ପଚାରି ନିଜ ଘରକୁ ଚୁପ୍‌ଚାପ୍ ଚାଲିଗଲା।

ଦିନେ ସେ ରାସ୍ତାରେ ଯାଉ ଯାଉ ଦେଖିଲା ଯେ ଦୁଇଟି ଷଣ୍ଢ ଲଢ଼େଇ କରୁଛନ୍ତି। ହଠାତ୍ ମାଧ ସିଂର ଛଅବର୍ଷର ପୁଅ ପାଠଶାଳା ଯିବା ରାସ୍ତାରେ ଷଣ୍ଢମାନଙ୍କ ମଝିରେ ପଡ଼ିଗଲା। ଷଣ୍ଢମାନେ ସିଂଘ ତଳକୁ କରି ଭୁଷାଭୁଷି ହେବା ପାଇଁ ଦୌଡ଼ିବା ଦେଖି ଅନ୍ୟ ଲୋକମାନେ ପିଣ୍ଡା ଉପରକୁ ଚଢ଼ିଗଲେ। ପିଲାକୁ ଦେଖି କେବଳ କହିଲେ, "ଆରେ ଏ ତ ମାଧ ସିଂ ପୁଅ ଏବେ ଷଣ୍ଢମାନଙ୍କ ପାଦତଳେ ଚାପି ହୋଇ ମରିଯିବ।" ଦୂରରୁ ଥାଇ ସମସ୍ତେ ବ୍ୟସ୍ତ ହେଲେ କିନ୍ତୁ ତାକୁ ରକ୍ଷା କରିବା ପାଇଁ କେହିହେଲେ ଆଗକୁ ଗଲେନାହିଁ।

ଦୂରରୁ ଶରଭ ଷଣ୍ଢମାନଙ୍କ ପାଖରେ ପିଲାକୁ ଦେଖିଦେଇ ଦୌଡ଼ିଲା। ପାଖରେ ପହଞ୍ଚି

ଦେଖିଲା ଗୋଟିଏ ଷଣ୍ଢର ଧକ୍କାରେ ସେ ପଡ଼ିଯାଇଛି ଓ ଆଉ ଷଣ୍ଢଟି ଖୁବ ଉଡ଼ାଇ ମାଡ଼ି ଆସୁଛି ଠିକ୍ ସେତିକିବେଳେ ଶରଭ ପିଲାଟିକୁ ବିଜୁଳି ବେଗରେ ଟେକି ନେଇଗଲା । ପିଲାକୁ ନେଇ ପିଣ୍ଡା ଉପରକୁ ଡିଙ୍ଗୁ ଡିଙ୍ଗୁ ନିଜେ ପଡ଼ି ରକ୍ତାକ୍ତ ହେଲା କିନ୍ତୁ ପିଲାଟି ତା' କାନ୍ଧ ଉପରେ ସୁରକ୍ଷିତ ଥାଏ ।

ଖବର ପାଇ ମାଧ ସିଂ ଘଟଣା ସ୍ଥଳରେ ପହଞ୍ଚିଲା । ସମସ୍ତେ ଶରଭର ପ୍ରଶଂସା କରୁଥା'ନ୍ତି । ପୂର୍ବକଥା ଓ ସେଦିନ ଘଟିଥିବା କଥା ଭାବି ମାଧ ସିଂ ଆଶ୍ଚର୍ଯ୍ୟ ହେଲା । ଶରଭର ତା' ପ୍ରତି ବ୍ୟବହାର ଓ ତା'ର ଶରଭ ପ୍ରତି ବ୍ୟବହାରରେ କେତେ ପାର୍ଥକ୍ୟ! ଲଜ୍ଜାରେ ମାଧ ସିଂର ମୁହଁ ତଳକୁ ହୋଇଗଲା । ସେ ନିଜ ଧୋତିରେ ଶରଭର ରକ୍ତ ପୋଛି ଦେଇ ତାକୁ ପିଣ୍ଡାରେ ବସାଇ କହିଲା, "ମୁଁ ମୂଢ଼ ତୁମ ନାମରେ ମିଥ୍ୟାରୋପ କରି ତୁମକୁ ଘରୁ ତଡ଼ିଦେଲି । କିନ୍ତୁ ତମେ ମହତ୍ ମୋ ପିଲାର ଜୀବନ ବଞ୍ଚାଇଲ । ପ୍ରକୃତରେ ତୁମର ସାଧୁତା ଓ ପ୍ରଭୁଭକ୍ତି ପ୍ରଶଂସନୀୟ ।"

ଏକ ସପ୍ତାହ ପରେ ଅର୍ଜୁନ ସିଂ ତୀର୍ଥାଟନରୁ ଫେରି ଆସିଲେ । ସେତେବେଳେ ମାଧ ସିଂ ଶରଭର ହାତ ଧରି ଫାଟକ ପାଖକୁ ନେଉଥିଲା । ଏ ଦୃଶ୍ୟ ଦେଖି ଅର୍ଜୁନ ସିଂ ଖୁସି ହେଲେ କିନ୍ତୁ ଆଶ୍ଚର୍ଯ୍ୟ ହେଲେ । ସେ ଆଶ୍ଚର୍ଯ୍ୟ ହୋଇ ପଚାରିଲେ, "କଥା କ'ଣ ? ଶରଭକୁ ହାତ ଧରି ନେଇଯାଉଛୁ କାହିଁକି । ଆଗରୁ ତ କାଲ ଥିଲା ଏବେ କ'ଣ ପୁଣି ଘୋଟା ହୋଇଗଲା ?"

"ବାପା, ଶରଭ କାଲ ହେଉ ବା ଘୋଟା ହେଉ, କିନ୍ତୁ ତା'ପରି ବିଶ୍ୱାସୀ ଓ ସାଧୁ ଆଉ ଦ୍ୱିତୀୟ ନାହିଁ ।" ମାଧ ସିଂ କହିଲା ଓ ଶରଭ ଘୋଟେଇ ଗୁଳିବା ପଛରେ ଥିବା କାହାଣୀ କହିଲା ।

ନାତିର ଜୀବନ ରକ୍ଷା ହୋଇଛି ଓ ଶରଭ ପ୍ରତି ମାଧ ସିଂର ମନୋଭାବର ପରିବର୍ତ୍ତନ ଦେଖି ଅର୍ଜୁନ ସିଂ ଖୁବ୍ ଆନନ୍ଦିତ ହେଲେ ।



# କନକ ଦାସ

କନକ ଦାସ ଥିଲେ ଜଣେ ଲୋଭୀ ଓ କଂଜୁସ ବ୍ୟକ୍ତି । ଏମିତି ଅବସ୍ଥାରେ ତା'ର ମୃତ୍ୟୁ ହୋଇଗଲା । ମୃତ୍ୟୁ ହେବା ମାତ୍ରେ ସେ ସ୍ୱର୍ଗର ଦ୍ୱାରଦେଶରେ ଯାଇ ପହଞ୍ଚିଲେ । ତାଙ୍କୁ ଦେଖିବାକ୍ଷଣି ଦ୍ୱାରପାଳ ପଚାରିଲେ, "ତମେ, ପୁଣି ସ୍ୱର୍ଗ ଦ୍ୱାରରେ ? କିପରି ? ତମେ କି ପୁଣ୍ୟ କରିଛ ବୋଲି ସ୍ୱର୍ଗ ଦ୍ୱାରକୁ ଦଉଡ଼ି ଆସିଲ ?"

"ଥରେ ଗୋଦାବରୀ ମେଳାରେ କଉଡ଼ିଟିଏ ପାଇ ମୁଁ ଜଣେ ବୁଢ଼ୀ ଭିକାରୁଣୀକୁ ଦାନ ଦେଇଥିଲି । ଚିତ୍ରଗୁପ୍ତଙ୍କ ଖାତାରେ ଲେଖାଥିବ ମ । ପଢି ଦେଖିଲ ।" କନକ ଦାସ କହିଲେ ।

ଦ୍ୱାରପାଳ କନକଦାସଙ୍କୁ ସାଥିରେ ନେଇ ଚିତ୍ରଗୁପ୍ତଙ୍କ ପାଖକୁ ଗଲେ । ସେ ଖାତା ଦେଖି କହିଲେ, "ତମେ ସେଇ କଉଡ଼ି ଯୋଗୁ କିଛି ସମୟ ପାଇଁ ସ୍ୱର୍ଗ ଦ୍ୱାରରେ ରହିପାରିଲ । ଏବେ ଅବଶିଷ୍ଟ ସମୟ ନରକ ଭୋଗିବାକୁ ପଡ଼ିବ ।"

କନକଦାସ ବିଚଳିତ ନ ହୋଇ କହିଲେ, "ଯଦି ନରକବାସ ଭାଗ୍ୟରେ ଅଛି ତେବେ ସେ କଉଡ଼ିଟି ଆପଣଙ୍କ ପାଖରେ କାହିଁକି ରହିବ ?" ଏକଥା କହି କନକଦାସ ନିଜର କଉଡ଼ିଟି ନେଇ ନିଜ ପଥରେ ଚାଲିଗଲେ ।






ରତ୍ନପୁରର ରାଜକନ୍ୟା ରତ୍ନପ୍ରଭା ସେଦିନ ତାଙ୍କ ସଖିମାନଙ୍କ ସହ ଦୁଇପହର ପର୍ଯ୍ୟନ୍ତ ଅନ୍ତଃପୁରକୁ ଲାଗିଥିବା ଉଦ୍ୟାନ ଭିତରେ ଖେଳୁଥିଲେ । ପ୍ରାୟ ଘଣ୍ଟାଏ କାଳ ଲୁଚକାଲି ଖେଳ ପରେ ରାଜକନ୍ୟା ଉଦ୍ୟାନ ଭିତରେ ଖାଲି ଦୌଡ଼ିବାକୁ ଲାଗିଲେ । ସେ କ'ଣ ଯେମିତି ସେମିତି ଦୌଡ଼ ? ତାଙ୍କ ସଖିମାନେ କେହି ତାଙ୍କୁ ଦୌଡ଼ରେ ଜିଣିପାରିଲେ ନାହିଁ ।

ଏହାପରେ ସେ ସ୍ନାନ ପାଇଁ ଉଦ୍ୟାନ ଭିତରେ ଥିବା ସରୋବରକୁ ଲଂଫ ଦେଲେ । ସେ ସରୋବର କିଛି ଛୋଟିଆ ନୁହେଁ । ତଥାପି ସେ ଦଶଥର ଏ ପାଖରୁ ସେ ପାଖଯାଏ ଓ ସେ ପାଖରୁ ଏ ପାଖଯାଏ ସନ୍ତରଣ କଲେ ।

ତା'ପରେ କିଛି ସମୟ ଫୁଲ ତୋଳି ସାରି ଫୁଲତକ ଜଣେ ସଖି ମନ୍ଦାକିନୀକୁ ଧରାଇ ଦେଇ ତରତରରେ ଅନ୍ତଃପୁର ଭିତରେ ନିଜ କୋଠରୀକୁ ଆସି ଶେଯ ଉପରେ ପଡ଼ିଗଲେ ।

ମରୀଚିକା ନାମରେ ତାଙ୍କର ଜଣେ ସଖି ଆସି ବ୍ୟସ୍ତ ହୋଇ କହିଲା, "ରାଜକୁମାରୀ! ଜଳଖିଆ ପ୍ରସ୍ତୁତ ।"

"ରହିଯାଅ!" ରାଜକନ୍ୟା କହିଲେ ।

"ଆପଣ ଯେମିତି ଗତିରେ ଓ ଯେତେ ସମୟ ପର୍ଯ୍ୟନ୍ତ ଦୌଡ଼ୁଥିଲେ, ମୁଁ ଜାଣିଥିଲି ତା'ପରେ ଏମିତି ହାଲିଆ ହେବେହିଁ ହେବେ !" ମରୀଚିକା କହିଲା ।

ରାଜକନ୍ୟା କିଛି କହିଲେ ନାହିଁ । କିନ୍ତୁ ଏ ମନ୍ତବ୍ୟରେ ସେ ଖୁସି ହେବାର ବା ଗର୍ବିତ ଅନୁଭବ କରିବାର ମନେ ହେଲା ନାହିଁ । ସେ ମୁହଁ ବୁଲାଇ ନେଲେ । ଅବଶ୍ୟ ମରୀଚିକା ତାହା ଲକ୍ଷ୍ୟ କରିପାରିଲା ନାହିଁ ।



ମଣିଚକା ପୁଣି କହିଲା, "ଜେମା, ବାସ୍ତବିକ ଆପଣଙ୍କ ଦୌଡ଼ ଦେଖି ମୁଁ ଆଶ୍ଚର୍ଯ୍ୟ ହେଲି। ଖାଲି ମୁଁ କାହିଁକି, ଯେ କୌଣସି ଲୋକ ଆଶ୍ଚର୍ଯ୍ୟ ହେବ। ଆମ ରାଜ୍ୟର ଶ୍ରେଷ୍ଠ ଦୌଡ଼ାଳି ହମ୍ମିର ଶାହ୍ ଆପଣଙ୍କୁ ପାରିବ କି ନା ସନ୍ଦେହ!"

"ପାଖକୁ ଆ!" ରାଜକନ୍ୟା ଏପଟକୁ ବୁଲିପଡ଼ି କହିଲେ, ମଣିଚକା ଖୁସି ହୋଇ ଛନ୍ଦମୟ ଗତିରେ ରାଜକନ୍ୟାଙ୍କ ପାଖକୁ ଲାଗିଗଲା। ସେ ମୃଦୁ ମୃଦୁ ହସୁଥାଏ।

ସଙ୍ଗେ ସଙ୍ଗେ ରାଜକନ୍ୟା ତା' ଗାଲରେ ଗୋଟାଏ ଚାପୁଡ଼ା କସିଦେଲେ।

"ଆରେ, ଇଏ କ'ଣ ହେଲା?" ମଣିଚକା ପଚାରିଲା।

"ବେଶ୍ ହେଲା!" କହିଲେ ରାଜକନ୍ୟା।

ମଣିଚକା ହସିବ କି କାନ୍ଦିବ ଠିକ୍ କରି ନପାରି ଚୁପ୍‌ଚାପ୍ ଗାଲ ଆଉଁସି ଠିଆ ହୋଇଥାଏ।

ସେତିକିବେଳେ ଦ୍ୱିତୀୟ ସଖି ସୌଦାମିନୀ ପଶି ଆସି କହିଲା, "ରାଜକୁମାରୀ! ଆପଣ ହାଲିଆ ହୋଇ ପଡ଼ିଲେଣି? ମୁଁ ଜାଣିଥିଲି ଏମିତି ହେବ। ଆପଣ ଯେମିତି ସନ୍ତରଣ କରୁଥିଲେ, ସେଥିରେ ଆମ ରାଜ୍ୟର ଶ୍ରେଷ୍ଠ ସନ୍ତରଣକାରୀ ଆଜାଦ୍ ସିଂହ ବି ଆପଣଙ୍କ ପାଖରେ ହାରିଯାନ୍ତା!"

"ଏଠିକି ଆସ!" ରାଜକନ୍ୟା କହିଲେ।

"ଆପଣ ଆଗେ ଖିଆପିଆ କରିବେ ଚାଲିଲେ। ତା'ପରେ ଅନ୍ୟ କଥା। ଉଚ୍ଛୁର ହେଲାଣି। ଭୋକ ଲାଗିବଣି। ଖାଇସାରି ଶୋଇଯିବେ!" ସୌଦାମିନୀ ପୁଣି କହିଲା।

"ପାଖକୁ ଆସ ବୋଲି କହିଲି ପରା? ଶୁଣୁନାହିଁ?" ରାଜକନ୍ୟା ଧମକ ଦେଇ କହିଲେ।

"ହଉ!" କହିଲା ସୌଦାମିନୀ।

ସୌଦାମିନୀ ଖୁସି ହୋଇ ଯେମିତି ରାଜକନ୍ୟାଙ୍କ ଶେଯ ପାଖକୁ ଆସିଛି, ସେମିତି ତା' ଗାଲରେ ବସିଗଲା ଦୁଇ ଚାପୁଡ଼ା!

"ଇଏ କ'ଣ?" ସୌଦାମିନୀ ଆଶ୍ଚର୍ଯ୍ୟ ହୋଇ ପଚାରିଲା।

"ଚାପୁଡ଼ା!" ରାଜକନ୍ୟା କହିଲେ।

ଦୁଇ ସଖି ସେ ଉତ୍ତରରେ ହସି ଉଠିଲେ ।

ଏହାପରେ ଭିତରକୁ ଆସିଲା ମନ୍ଦାକିନୀ । ସେ ବି ଗୃପୁଡ଼ା ଖାଇଲେ ମଜା ହେବ, ସେଥିପାଇଁ ଅନ୍ୟ ଦୁଇ ସଖି ପଚାରିଲେ, "ମନ୍ଦାକିନୀ, କହିଲୁ ଆମ ରାଜକୁମାରୀ କାହିଁକି ଏମିତି ହଠାତ୍ ହାଲିଆ ହୋଇ ପଡ଼ିଲେ ?"

"ମଲା, ଏଥିରେ ଭାବିବାର କ'ଣ ଅଛି ? ଏତେ ଗୁଡ଼ାଏ ଫୁଲ ତୋଳିବା କ'ଣ ସହଜ କଥା ? ସୁକୁମାର ହାତରେ ଫୁଲ ଡାଳ-ମାନ ଧରି ତଳକୁ ନୁଆଇଁବା, ପୁଣି ଫୁଲ ତୋଳିବା, ପୁଣି ଗୋଟାଏ ଗଛ ପାଖରୁ ଅନ୍ୟ ଗଛପାଖକୁ ଯିବା—ଏଥିରେ କେଉଁ ରାଜକୁମାରୀ ହାଲିଆ ହୋଇ ନଯିବ ?" ମନ୍ଦାକିନୀ ଗମ୍ଭୀର ଭାବରେ କହିଲା ।

ରାଜକନ୍ୟା ସଙ୍ଗେ ସଙ୍ଗେ ବିଛଣାରୁ ଉଠିପଡ଼ି ଅଙ୍ଗୁଳିରୁ ମୁଦିଟିଏ ବାହାର କରି ମନ୍ଦାକିନୀକୁ ପିନ୍ଧାଇ ଦେଲେ ଓ ଖାଇବାକୁ ପ୍ରସ୍ତୁତ ହେଲେ । ରାଜକନ୍ୟା ଶୋଇ ପଡ଼ିବା ପରେ ମଞ୍ଜରିକା ଓ ସୌଦାମିନୀ ମନ୍ଦାକିନୀକୁ କହିଲେ, "ହଇରେ ମିଛୋଇ, ଫୁଲ ତୋଳି କେହି ହାଲିଆ ହୁଏ ?"

"ମୁଁ ମିଛୋଇ ହୋଇପାରେଁ, ତମେ-ଗୁଡ଼ାକ ବୋକା ! ଯେ କୌଣସି ରାଜକନ୍ୟା ନିଜକୁ ସୁକୁମାରୀ ବୋଲି ଭାବେ । ତମେ ଦୁଇ ମୂର୍ଖ ତାଙ୍କ ଦୌଡ଼ିବା ଓ ସନ୍ତରଣ ପଟୁତାକୁ ଏମିତି ଭାବରେ ବର୍ଣ୍ଣନା କଲ, ସତେ ଅବା ସେ ଅଣ୍ଡିରାଚଣ୍ଡୀ! ହମ୍ମିର ଶାହ୍ ଓ ଆଜାଦ୍ ସିଂହ ସହ ତାଙ୍କୁ ତୁଳନା କରି ତମେମାନେ ସେ ଯେମିତି କନ୍ୟାସୁଲଭ ଗୁଣ ଅପେକ୍ଷା ପୁରୁଷସୁଲଭ ଗୁଣରେ ବେଶି ଆଗୁଆ, ଏଇ କଥା ତାଙ୍କୁ ମନେ ପକାଇଦେଲ । ସେ ତ ତମମାନଙ୍କୁ ଗୋଟାଏ ଦୁଇଟା ଗୃପୁଡ଼ା ପକେଇଲେ । ମୁଁ ହୋଇଥିଲେ ତମମାନଙ୍କ ନାକ କାନ କଟାଇବାର ବ୍ୟବସ୍ଥା କରିଥାନ୍ତି !" ମନ୍ଦାକିନୀ କହିଲା ।

ତିନି ସଖି ହସି ହସି ଗଡ଼ଗଲେ ।





# ତୁରନ୍ତ ଦାନ-ମହାକଲ୍ୟାଣ

ପଣ୍ଡରପୁର ଗ୍ରାମରେ ବସ୍ତୁଦତ୍ତ ନାମକ ଜଣେ ବାଚକ ପଣ୍ଡିତ ଥିଲେ ।

ଥରେ ନିକଟସ୍ଥ ଗୋଟିଏ ଗ୍ରାମରେ ବସ୍ତୁଦତ୍ତ ପହଞ୍ଚିଲେ । ଲୋକମାନେ ଶାସ୍ତ୍ର-ପୁରାଣ ଶୁଣିବାକୁ ଆଗ୍ରହୀ ହୋଇ ତାଙ୍କର ରହିବାର ବ୍ୟବସ୍ଥା କରାଇଲେ । ଜନତା ମଧ୍ୟରୁ ଜଣେ କହିଲା, "ଜମିଦାର ରାମଗୁପ୍ତଙ୍କ କୋଠା ସାମ୍ନାରେ ଗୋଟାଏ ବଡ଼ ଚଉତରା ଅଛି ଓ ଗଛ ଛାଇ ଅଛି, ସେଇଠି ସଭା କରାଯାଉ ।" ଏକଥା ସମସ୍ତଙ୍କ ମନକୁ ପାଇଲା । ସମସ୍ତେ ପଣ୍ଡିତଙ୍କୁ ଧରି ରାମଗୁପ୍ତ ଘରକୁ ଗଲେ । ସେଠାରେ ପହଞ୍ଚି ରାମଗୁପ୍ତଙ୍କୁ କହିଲେ, "ମହାଶୟ, ସଭା ପାଇଁ ଆମେ ଉପଯୁକ୍ତ ସ୍ଥାନ ପାଇଲୁ ନାହିଁ । ଆପଣଙ୍କର ଏଇ ସ୍ଥାନ ସବୁଠାରୁ ଉପଯୁକ୍ତ । ପଣ୍ଡିତଙ୍କ ଟଙ୍କା ଆମେ ଦେଇଦେବୁ ।"

ପଢଓ ପୁରାଣ ଶୁଣିବା ପାଇଁ ରାମଗୁପ୍ତଙ୍କର କୌଣସି ଆଗ୍ରହ ନ ଥିଲା, ତଥାପି ତାଙ୍କ ଘର ସଭା ପାଇଁ ବଛାଯାଇଛି ଦେଖି ସେ ବେଶ୍ ଖୁସି ହେଲେ । ତେଣୁ ସେ ପ୍ରସନ୍ନତା ପ୍ରକାଶ କରି କହିଲେ, "ମୋ ଘରେ ଧର୍ମସଭା ହେବା ତ ମୋର ପରମ ସୌଭାଗ୍ୟର କଥା ।"

ସେଇଦିନହିଁ ରାମଗୁପ୍ତଙ୍କ ଘର ସାମନାରେ ସଭା ବସିଲା । ଭଗବାନଙ୍କର ଛବି ଫୁଲରେ ସଜାଇ ରଖା ହେଲା । ଆଉ ମାଝରେ ଥିଲା ଏକ ଥାଳି । ଯିଏ ଯେତେ ଖୁସି ପଇସା ସେଥିରେ ପକାଉଥା'ନ୍ତି । ଆଉ କେତେଜଣ ଭାବୁଥା'ନ୍ତି କି ପୁରାଣ କଥା ଶେଷ ହେଲେ ପଇସା ଦେବେ । ରାମଗୁପ୍ତ ଶେଷରେ ପ୍ରଣାମୀ ଦେବାର ସ୍ଥିର କଲେ । ଆଗରୁ ଶହେ ଏକଟଙ୍କା ଓ ଏକ ମୂଲ୍ୟବାନ୍ ଶାଲ୍ ରଖିଥା'ନ୍ତି ।

ପଚିଶବର୍ଷ ତଳର 'ଚନ୍ଦାମାମା'ରୁ ଗୃହୀତ

ଏହି ସମୟରେ ଶ୍ୟାମଗୁପ୍ତ ନାମକ ଜଣେ ବ୍ୟକ୍ତି ଥାଳରେ ଏକୋଇଶ ଟଙ୍କା ପ୍ରଣାମୀ ଦେଲେ ଓ ପଣ୍ଡିତଙ୍କୁ ଛଅଶ ଟଙ୍କାର ଗୋଟିଏ ଶାଲ ଦେଲେ । ସେ ମଧ୍ୟ ଗ୍ରାମର ଜଣେ ଗଣ୍ୟମାନ୍ୟ ବ୍ୟକ୍ତି, ହେଲେ ରାମଗୁପ୍ତ ତାଙ୍କଠାରୁ ଅଧିକ ଧନୀ । ଭାବଲେ ଶ୍ୟାମ-ଗୁପ୍ତଙ୍କଠାରୁ ଅଳ୍ପ ବେଶି ଦେଲେ ତ ତାଙ୍କର ସର୍ବାପେକ୍ଷା ବେଶି ହେବ; ଅଯଥାରେ କାହିଁକି ଶାଲ୍ ଓ ଶହେ ଏକ ଟଙ୍କା ଦେବେ ? ତେଣୁ ଝଟ୍‌କରି ଉଠି ଆସିଲେ ପ୍ରଣାମୀ ପାଇଁ ରଖିଥିବା ଛନିଷ ଟଙ୍କାର ପରିମାଣ କମାଇ ଦେଲେ ।

ପଣ୍ଡିତ ପୁରାଣ ପଢ଼ି ବୁଝାଉଥା'ନ୍ତି ଓ ସମସ୍ତେ ମୁଗ୍‌ଧ ହୋଇ ଶୁଣୁଥା'ନ୍ତି । ପଣ୍ଡିତ ଥିଲେ ଖୁବ୍ ବୁଦ୍ଧିମାନ୍ ବ୍ୟକ୍ତି । ରାମଗୁପ୍ତ ଯିବା ଓ ଫେରିବା ସବୁ ଲକ୍ଷ୍ୟ କରି ଦେଖୁଥା'ନ୍ତି । ଫେରିବା ବେଳକୁ ତାଙ୍କ ମୁହଁର ଭାବ ପୂର୍ବଠାରୁ ଅନେକ ତଫାତ୍ ଥିଲା । ତା'ପରେ ରାମଗୁପ୍ତ ଅନ୍ଦରମହଲରୁ ଫେରିବା ପରେ ପଣ୍ଡିତ କଥା ପ୍ରସଙ୍ଗରେ ମହାଭାରତରୁ ଗୋଟିଏ ଗଳ୍ପ ଶୁଣାଇଲେ । ସେ କହିଲେ—

"କର୍ଣ୍ଣ କେବଳ ଜଣେ ବୀର ନଥିଲେ, ସେ ଜଣେ ଦାନବୀର ମଧ୍ୟ ଥିଲେ । ଦିନେ କର୍ଣ୍ଣ ସ୍ନାନ କରିବା ପୂର୍ବରୁ ନିଜ ଦେହରେ ତେଲ ମାଲିସ୍ କରୁଥା'ନ୍ତି । ଦ୍ୱାରପାଳ ଭିତରକୁ ଆସି କହିଲା ଜଣେ 'ବ୍ୟକ୍ତି କିଛି ପାଇବା ଆଶାରେ ବାହାରେ ଅପେକ୍ଷା କରୁଛି । କର୍ଣ୍ଣ ତାଙ୍କୁ ଭିତରକୁ ପଠାଇ ଦେବାକୁ କହିଲେ ।



ବ୍ୟକ୍ତିଜଣଙ୍କ ଭିତରକୁ ପ୍ରବେଶ କରି କହିଲେ, "ମହାରାଜଙ୍କର ଜୟ ହେଉ । ମୁଁ ଜଣେ ଗରିବ ବ୍ରାହ୍ମଣ । କିଛି ଦାନ ମିଳୁ ।"

ସେତେବେଳେ କର୍ଣ୍ଣଙ୍କର ବାମହାତରେ ସ୍ୱର୍ଣ୍ଣର ଛୋଟ ପାତ୍ରଟିଏ ଥିଲା ଯେଉଁଥିରୁ ତେଲ ନେଇ ସେ ଦକ୍ଷିଣ ହାତରେ ଦେହରେ ଲଗାଉଥିଲେ । ବ୍ରାହ୍ମଣଙ୍କ କଥା ଶୁଣୁ ଶୁଣୁ ସେ ସ୍ୱର୍ଣ୍ଣପାତ୍ରଟି ବ୍ରାହ୍ମଣଙ୍କୁ ଦେଇ ଦେଲେ ।

ବ୍ରାହ୍ମଣ ଦାନ ଗ୍ରହଣ କରି ପଚାରିଲେ, "ମହାରାଜ, ଆପଣ ତ ଦାନବୀର ଓ ଜ୍ଞାନୀ । ଶାସ୍ତ୍ରରେ ଲେଖା ଅଛି ଦକ୍ଷିଣ ହସ୍ତରେ ଦାନ ଦେଲେ ଦାନର ମହତ୍ତ୍ୱ ଥାଏ । କିନ୍ତୁ ଆପଣ ସବୁ ଜାଣି ମଧ୍ୟ ବାମ ହାତରେ କିପରି ମୋତେ ଦାନ ଦେଲେ ?"

କର୍ଣ୍ଣ ହସି ହସି କହିଲେ, "ଦାନର ଗୋଟିଏ ମାତ୍ର ରହସ୍ୟ ଅଛି । ତାହା ହେଉଛି ଦାନ ତତକ୍ଷଣାତ୍ ଓ ଅବିଳମ୍ବେ ଦିଆଯିବା ଉଚିତ୍ । ଦାନ ଦେବାର ଇଚ୍ଛା ହେବା ମାତ୍ରେ ବିନା ବିଚାରରେ ଓ ବିନା ବିଳମ୍ବରେ ତୁରନ୍ତ ଦାନ ଦେଇଦେବା ଉଚିତ୍ । ଯେକୌଣସି ଭାବରେ ହେଉ ନା କାହିଁକି । ମୁଁ ଯେତେବେଳେ ଦାନ ଦେବାକୁ ଚିନ୍ତିଲି ସ୍ୱର୍ଣ୍ଣପାତ୍ରଟି ମୋ ବାମ ହାତରେ ଥିଲା । ତାକୁ ଦକ୍ଷିଣ ହାତକୁ ବଦଳାଇବା ସମୟ ଭିତରେ ହୁଏତ ମୋର ମନ ମଧ୍ୟ ପରିବର୍ତ୍ତନ ହୋଇ ଯାଇଥା'ନ୍ତା । ତେଣୁ ମୁଁ ବାମହାତରେହିଁ ଦାନ ଦେଇଦେଲି ।"

ଏ ଗଳ୍ପଟି କଥା ପ୍ରସଙ୍ଗରେ କହି ପଣ୍ଡିତଜୀ ପୁଣି ମୂଳ ମହାଭାରତ ବ୍ୟାଖ୍ୟା କରିବାରେ ଲାଗିଲେ । ରାମଗୁପ୍ତଙ୍କର ମନେ ହେଲା ଯେପରି ପଣ୍ଡିତ ତାଙ୍କ ମନକଥା ଜାଣିପାରି ତାଙ୍କୁ ଲକ୍ଷ୍ୟ କରି ଏ ଗଳ୍ପଟି କହିଲେ । ତେଣୁ ପଣ୍ଡିତଙ୍କ ବ୍ୟାଖ୍ୟା ସମାପ୍ତ ହେବା ମାତ୍ରେ ସେ ପୂର୍ବାପେକ୍ଷା ଅଧିକ ଟଙ୍କା ଓ ଜିନିଷ ଉପହାର ଦେଇ ପଣ୍ଡିତଙ୍କୁ ବିଦାୟ ଦେଲେ ।





# କଳାର ବିକାଶ

ଗଗନ ସେତେବେଳେ ନୂଆ ନୂଆ ବିବାହ କରିଥାଏ । ସେ ଓ ତା' ସ୍ତ୍ରୀ ରେବା ସହରରେ ଗୋଟିଏ ଘରଭଡ଼ା ନେଇଥା'ନ୍ତି । ଥରେ ଗଗନର ବନ୍ଧୁ ବିକାଶ ସସ୍ତ୍ରୀକ ସେଇ ସହରକୁ କୌଣସି ଏକ କାମରେ ଆସିଥାଏ । ଗଗନ ଘରେହିଁ ସେମାନେ ଅତିଥି ହୋଇ ରହିଲେ । ଗଗନ ଓ ରେବା ସେମାନଙ୍କର ଖୁବ୍ ତତ୍ତ୍ୱ ନେଉଥା'ନ୍ତି । ଚାରିଜଣ ମିଳି ଗପସପ ଓ ଗୀତବୋଲରେ ସମୟ କଟାଉଥା'ନ୍ତି । ବିକାଶର ସ୍ତ୍ରୀ ସୁମତି ଥିଲା ଜଣେ ସୁଗାୟିକା । ତା'ର କଣ୍ଠ ଯେପରି ମଧୁର ଗୀତ ଗାଇବାର ଭଙ୍ଗୀ ସେହିପରି ଅତି ସୁନ୍ଦର । ସୁମତିର ଗୀତରେ ଗଗନ ଏତେ ମୁଗ୍ଧ ହୋଇଗଲା ଯେ ସେମାନେ ଯିବା ପରେ ସେ ଥରେ ତା'ର ସ୍ତ୍ରୀକୁ ଡାକି କହିଲା, "ଶୁଣ ରେବା, ତୁମେ କାହିଁକି ଗୀତ ଶିଖୁନାହିଁ ? ତମେ ଚାହିଁଲେ ମୁଁ ଜଣେ ସଙ୍ଗୀତ ଶିକ୍ଷକ ସେଥିପାଇଁ ନିଯୁକ୍ତ କରିଦେବି । ତୁମେ ଗୀତ ଶିଖି ଗାଇବ ଓ ମୋତେ ଆନନ୍ଦ ଦେବ ।"

ରେବା କହିଲା, "ଗୀତ ଏପରି ଏକ ଜିନିଷ-ଯାହାକୁ ସମସ୍ତେ ଶିଖି ପାରିବେ ନାହିଁ । ସମସ୍ତେ ଉପଭୋଗ କରିପାରିବେ ହୁଏତ, କିନ୍ତୁ ଗାଇବା କାମ କେବଳ କେତେଜଣ ପାରିବେ ଯେଉଁମାନଙ୍କର ସେ କଳା ଜନ୍ମଗତ ।"

"ନା, ନା, ମୁଁ ଖୁବ୍ ଭଲ ଶିକ୍ଷକ ବ୍ୟବସ୍ଥା କରିବି । ଏ ସହରରେ ବେଶ୍ କେତେଜଣ ଗୁଣୀ ସଙ୍ଗୀତ-ଶିକ୍ଷକ ଅଛନ୍ତି ବୋଲି ମୁଁ ଜାଣେ । ସେମାନେ ସହଜରେ ଶିଖାଇ ଦେବେ ।" ଗଗନ କହିଲା ।

"ମୁଁ କିନା ସହଜରେ ଶିଖିପାରିଲେ ହେବ?" ରେବା ଉତ୍ତର ଦେଲା ।

ରେବାର କଥାରେ କିନ୍ତୁ ଗଗନ ସନ୍ତୁଷ୍ଟ ହେଲା ନାହିଁ । ବରଂ ସେ ଭାବିଲା ଯେ ରେବା ଅଳସୁଆମୀ କରି ଗୀତ ଶିଖୁନାହିଁ । ରେବା ବୁଝାଇବାକୁ ଯେତେ ଚେଷ୍ଟା କଲେ ମଧ୍ୟ ଗଗନ କିଛି ବୁଝିଲା ନାହିଁ ।

କିଛିଦିନ ବିତିଗଲା । ଥରେ ସେଇ ସହରରେ ଜଣେ ବଡ଼ ଶିଳ୍ପୀଙ୍କ ଦ୍ୱାରା ଅଙ୍କା ହୋଇଥିବା ଛବି ସବୁକୁ ନେଇ ଏକ ପ୍ରଦର୍ଶନୀ ଖୋଲା ହେଲା । ସାରା ସହରରେ ତାହା ହଲଚଲ ପକାଇଥାଏ । ସମସ୍ତେ ଦେଖିବାକୁ ଯାଉଥା'ନ୍ତି । ସମସ୍ତଙ୍କ ମୁହଁରେ ଶିଳ୍ପୀଙ୍କର ପ୍ରଶଂସା । ଗଗନ ଓ ରେବା ମଧ୍ୟ ଦେଖିବାକୁ ଗଲେ । ପ୍ରତ୍ୟେକ ଛବି ଦେଖି ସେମାନେ ମୁଗ୍ଧ ଓ ଚମତ୍କୃତ ହେଉଥା'ନ୍ତି । ପ୍ରଦର୍ଶନୀଟି ସମ୍ପୂର୍ଣ୍ଣ ଦେଖି ସାରି ଦୁହେଁ ଫେରିବା ବାଟରେ ରେବା ଗଗନକୁ କହିଲା, "ଶୁଣ, ତମର ଖାଲି ସମୟରେ ତମେ ଆଙ୍କିବା ଅଭ୍ୟାସ କଲେ କମିତି ହୁଅନ୍ତା ? ତମେ ଅଭ୍ୟାସ କରୁ କରୁ ଦିନେ ନା ଦିନେ ତମେ ଜଣେ ମହାନ୍ ଶିଳ୍ପୀ ହୋଇ ପାରନ୍ତ ।"

ଗଗନ ତତ୍‌କ୍ଷଣାତ୍ କହିଲା, "ପାଗଳ ନା କ'ଣ ? କଳାକାରମାନେ ଯେଉଁ କଳା ନେଇ ଜନ୍ମ ହୋଇଥା'ନ୍ତି ସେଇଥିରେ ବିକାଶ କରନ୍ତି । ଯେ କେହି ଲୋକ କ'ଣ ଚେଷ୍ଟାକରି ଏସବୁ କରିପାରେ ? ତମେ କ'ଣ ବୋକାଙ୍କ ପରି କଥା କହୁଛ ?"

"ଏବେ ତ ମୁଁ ବୋକାଙ୍କ ପରି କଥା କହୁଛି, ଆଉ ତମେ ଯେତେବେଳେ ମୋତେ ସଙ୍ଗୀତ ସାଧନା କରିବାକୁ କହୁଥିଲ ସେତେ-ବେଳେ ତମେ କମିତି ବୁଦ୍ଧିମାନ ପରି କଥା କହୁଥିଲ?" ରେବା କହିଲା ।

ଗଗନ ନିଜର ଭୁଲ ବୁଝିପାରିଲା । ସବୁ ପ୍ରକାର କଳା ଯେ ମଣିଷର ଜନ୍ମଗତ ଗୁଣ ଓ ଯେ କୌଣସି ଲୋକ ଚାହିଁଲେ ଯେ ତାହା ବିକାଶ କରିପାରିବ ନାହିଁ ଏ ସତ୍ୟ ସେଦିନ ବେଶି ଭଲ ଭାବରେ ଗଗନ ଉପଲବ୍ଧି କଲା ।





# ବିଷ୍ଣୁ ପୁରାଣ

ମନ୍ଦୋଦରୀ ମଧ୍ୟ ବିଭୀଷଣ ପରି ରାବଣଙ୍କୁ ବହୁତ ବୁଝାଇଲା । ସେ କହିଲା, "ହେ ସ୍ୱାମୀ, ଆପଣ ସୀତାଙ୍କୁ ଏପରି ଆଣି ଭୁଲ୍ କରିଛନ୍ତି । ସୀତାଙ୍କୁ ନିର୍ଜନ ବନରେ ଅସହାୟା ଓ ଏକଲା ଦେଖି ଆପଣ ଧନସମ୍ପଦ ବା ପଶୁପକ୍ଷୀ ପରି ଉଠାଇ ନେଇ ଆସିଛନ୍ତି । ଏପରି କୁକର୍ମ ଆପଣ କରିଛନ୍ତି ନିଜ ଭଉଣୀ ସୂର୍ପଣଖାର ଅପମାନର ପ୍ରତିଶୋଧ ନେବା-ପାଇଁ । ଏବେ ମଧ୍ୟ ମୁଁ କହୁଛି ସୀତାଙ୍କୁ ଫେରେଇ ଦିଅନ୍ତୁ ନହେଲେ ଦୁଇପଟରୁ ଅସଂଖ୍ୟ ଜନକ୍ଷୟ ହେବ ଓ ସର୍ବନାଶ ହେବ ।"

ରାବଣ ସଙ୍ଗେ ସଙ୍ଗେ ଉତ୍ତର ଦେଲା, "ତୁମ ସ୍ୱାମୀଙ୍କୁ ଏତେ ଡରୁଆ ଓ କାପୁରୁଷ ବୋଲି ଧରୁଛ କାହିଁକି ? ମୁଁ କ'ଣ ସାଧାରଣ ବ୍ୟକ୍ତି ହୋଇଛି ? ଯେଉଁ ରାବଣର ନାମ ଶୁଣିଲେ କି ଦେବତା, କି ଗନ୍ଧର୍ବ ସମସ୍ତେ ଭୟରେ ଥରହର ତାକୁ ତମେ କହୁଛ କ୍ଷୁଦ୍ର ମନୁଷ୍ୟ ନିକଟରେ ମଥାନତ କରିବାକୁ ? ମୋତେ କାତରତା ଶିଖାଇବାର ପ୍ରଚେଷ୍ଟାରୁ ତମେ ବିରତ ହୁଅ । ରାମର ବଳ ମୁଁ ଭଲରୂପେ ଜାଣେ । ସେ ମୋ ସାମନାରେ ତୃଣଖଣ୍ଡ ସଦୃଶ ।"

ଏଣେ ରାମଚନ୍ଦ୍ର ସମସ୍ତ ବାନରସେନାଙ୍କୁ ଧରି ଲଙ୍କା ଅଭିମୁଖେ ଯାତ୍ରା ଆରମ୍ଭ କଲେ । ବୀର ହନୁମାନ ଥିଲେ ମାର୍ଗ ପ୍ରଦର୍ଶନକାରୀ । ସମୁଦ୍ର ନିକଟରେ ପହଞ୍ଚି ନୀଳଙ୍କର ତତ୍ତ୍ୱାବଧାନରେ ସେତୁନିର୍ମାଣ କାର୍ଯ୍ୟ ଚାଲିଲା । ସେହି କାର୍ଯ୍ୟରେ ସବୁ ବାନରମାନେ ଲାଗି ରହିଥିଲେ ।



ସେତୁ ନିର୍ମାଣ ପରେ ଦେଖାଗଲା ବିଭୀଷଣ, ତାଙ୍କର କେତେକ ଅନୁଚରଙ୍କ ସହ ରାବଣ ଦ୍ୱାରା ବହିଷ୍କୃତ ହୋଇ ଆସି ରାମଙ୍କ ନିକଟରେ ଶରଣ ପ୍ରାର୍ଥନା କରୁଛନ୍ତି ।

ବିଭୀଷଣଙ୍କୁ ଗ୍ରହଣ କରିବା ଉପରେ ନାନା ପ୍ରକାର ମତଭେଦ ଦେଖାଦେଲା । ଅନେକ କହିଲେ ଏହା ରାବଣର ଏକ ରାକ୍ଷସୀମାୟା । ଆଜି ଆସି ଶରଣ ନେଇ କାଲି ହୁଏତ ସେ ରାମଙ୍କ ପକ୍ଷର ଯୁଦ୍ଧ ବିଷୟରେ ସମସ୍ତ ତଥ୍ୟ ଓ ଗୋପନ କଥା ଯାଇ ଶତ୍ରୁପକ୍ଷ ନିକଟରେ ପ୍ରକାଶ କରିବ । କିଏ ବା ମତ ଦେଲା ଯଦି ଆସିଛି କିଛିଦିନ ଅପେକ୍ଷା କରି ପରେ ହାବଭାବରୁ ତା'ର ପ୍ରକୃତ ଉଦ୍ଦେଶ୍ୟ ଜାଣି ତାକୁ ଶରଣ ଦିଆଯିବ । କିନ୍ତୁ ହନୁମାନ କହିଲେ, "ରାମଚନ୍ଦ୍ର ଜଗତର ପ୍ରଭୁ । ଶତ୍ରୁମିତ୍ର ନିର୍ବିଶେଷରେ ସେ ସମସ୍ତଙ୍କୁ ଶରଣ ଦେଇ ପାରିବେ ।" ରାମଚନ୍ଦ୍ର ଆନନ୍ଦ ମନରେ ତାଙ୍କୁ ଗ୍ରହଣ କଲେ ଓ ଲଙ୍କାର ରାଜା କରାଇବାର ପ୍ରତିଶ୍ରୁତି ଦେଲେ । ତା'ପରେ ରାମଚନ୍ଦ୍ର ସମୁଦ୍ରରୁ ଜଳ ଆଣି ବିଭୀଷଣଙ୍କୁ ଲଙ୍କାପତି ଭାବରେ ଅଭିଷେକ କଲେ ।

ସେତୁବନ୍ଧ ହେବା ପରେ ସମଗ୍ର ବାନର ସେନା ନେଇ ରାମ, ଲକ୍ଷ୍ମଣ, ହନୁମାନ ଓ ବିଭୀଷଣ ଲଙ୍କାରେ ପହଞ୍ଚିଲେ । ଗୁପ୍ତଚରଙ୍କଠାରୁ ସବୁ ଖବର ଶୁଣି ରାବଣ ମନ ମଧ୍ୟରେ ଟିକିଏ ଭୀତ ହୋଇ ଭାବିଲା, "କିପରି ଏଡ଼େ ବଡ଼ ସମୁଦ୍ରକୁ ସେମାନେ ବନ୍ଧ ବାନ୍ଧିଲେ । କ'ଣ ରାମ ସାରା ତ୍ରିଭୁବନରେ ବଡ଼ ବୀର ।" ଏଇପରି ସବୁ ଭାବୁ ଭାବୁ ସେକଥା ଗୁପ୍ତ ରଖିବାକୁ ସେ ବାହାରେ ଅଟ୍ଟହାସ କରି ଉଠିଲା ଓ କହିଲା, "ପିମ୍ପୁଡ଼ିଙ୍କର ମୃତ୍ୟୁ ପୂର୍ବରୁହିଁ ପକ୍ଷ ଉଠିଥାଏ । ଏମାନଙ୍କର ସେଇ ଅବସ୍ଥା ।"

ସେତେବେଳେ ରାବଣର ମନ୍ତ୍ରୀ ପ୍ରହସ୍ତ କହିଲା, "ପ୍ରଭୁ, ନଗରରେ ପ୍ରବେଶ କରିବା ପୂର୍ବରୁହିଁ ସେମାନଙ୍କୁ ବିନଷ୍ଟ ଓ ସମ୍ପୂର୍ଣ୍ଣ ଧ୍ୱଂସ କରିଦେବା ଉଚିତ ହେବ ।"

ରାବଣ ଏକଥା ଶୁଣି ଅହଂପୂର୍ଣ୍ଣ ବଚନରେ କହିଲା, "ଆସନ୍ତୁ, ସେମାନଙ୍କୁ ଆସିବାକୁ ଦିଅ ।

କାରଣ ମୋ ଭାଇ କୁମ୍ଭକର୍ଣ୍ଣ କହୁଦିନ ଧରି ଉପାସ ଅଛି। ଆଗ ସେ ପେଟଭରି ଖାଉ।"

ରାମଚନ୍ଦ୍ର ସମୁଦ୍ର ତଟରେ ପହଞ୍ଚି ସେନାମାନଙ୍କୁ ଏକାଠି କରି ବ୍ୟୂହ ରଚନା କରୁଥାନ୍ତି, ସେତିକିବେଳେ ଅଙ୍ଗଦ ରାମଚନ୍ଦ୍ରଙ୍କ ପକ୍ଷରୁ ଦୂତ ରୂପେ ରାବଣ ପାଖକୁ ଗଲେ। ଅଙ୍ଗଦ ରାବଣର ଦରବାରରେ ପହଞ୍ଚି କହିଲେ, "ହେ ରାବଣ, ଶୁଣ, ମୁଁ ହେଉଛି ବାଲୀର ପୁଅ ଯିଏ ତମକୁ ଥରେ ନିଜ ଲାଙ୍ଗୁଡ଼ରେ ବୁଲେଇ ଫିଙ୍ଗି ଦେଇଥିଲା। ସେହି ଦିନଠାରୁ ତମେ ମୋ ପିତାଙ୍କ ସହିତ ବରାବର ସଦ୍‌ଭାବ ରଖିଥିଲ। ତେଣୁ ମୁଁ ଆସିଲି ଥରେ ତୁମକୁ ଚେତେଇ ଦେବାକୁ ଯେ ରାମଙ୍କ ସହିତ ଶତ୍ରୁତା ନ କରି ତାଙ୍କର ଶରଣ ନିଅ। ସେ ତମକୁ କ୍ଷମା କରିଦେବେ। କିନ୍ତୁ ଯଦି ଭାବୁଥାଅ ବାନରସେନା ତମର ଭକ୍ଷ୍ୟ ତେଣୁ ତମର କିଛି କରିପାରିବେ ନାହିଁ, ତାହାଲେ ସେଇଟା ସମ୍ପୂର୍ଣ୍ଣ ଭୁଲ୍। ତମକୁ ବାରମ୍ବାର ବୁଝାଇବାକୁ ପଡିବ ନାହିଁ ଯେ ବାନରମାନେ କେତେ ବଳୁଆ।"

ଅଙ୍ଗଦ କଥାରେ ରାବଣ କ୍ରୋଧରେ ଜଳିଗଲା। ସେ ଅଙ୍ଗଦକୁ ମାରିବାକୁ ନିଜର ତରବାରି ଉଠାଇଲା। ରାବଣକୁ ଅପମାନିତ କରିବା ପାଇଁ ଅଙ୍ଗଦ ରାବଣର ମୁକୁଟରେ ଖୁବ୍ ଜୋର୍‌ରେ ଆଘାତ କଲେ; ରାବଣ ପଡ଼ିଗଲା ଓ ଅଙ୍ଗଦ ଏକା ଡିଆଁକେ ଆସି



ରାମଚନ୍ଦ୍ରଙ୍କ ଶିବିରରେ ହାଜର। ତା'ପରେ ବାନର ସେନା ଲଙ୍କାନଗରୀକୁ ଚାରିଦିଗରୁ ଘେରିଯାଇ ଆକ୍ରମଣ କରିବାକୁ ଲାଗିଲେ। ପିମ୍ପୁଡ଼ିଧାର ପରି ବାନରସେନା ନଗରୀ ଭିତରକୁ ପ୍ରବେଶ କରୁଥିବାର ଦେଖି ରାବଣ କୁମ୍ଭକର୍ଣ୍ଣକୁ ଉଠାଇଲା।

କୁମ୍ଭକର୍ଣ୍ଣ ଅନେକ ଦିନ ପୂର୍ବେ ଥରେ ଘୋର ତପସ୍ୟା କରୁଥାଏ। ତପସ୍ୟାର ସିଦ୍ଧି ହେଲା। ବ୍ରହ୍ମା ଆବିର୍ଭାବ ହୋଇ ବର ଯାଚିଲେ। କୁମ୍ଭକର୍ଣ୍ଣ ବର ମାଗିବା ଆଗରୁ ବ୍ରହ୍ମାଙ୍କ ନିର୍ଦ୍ଦେଶରେ ଦେବୀ ସରସ୍ୱତୀ କୁମ୍ଭକର୍ଣ୍ଣର କଣ୍ଠରେ ବସି କୁହାଇଦେଲେ ଯେ ସେ ଛ ମାସ ଶୋଇବ ଓ ଥରେ ଉଠି



ଯାହା ଇଚ୍ଛା ଖାଇବ। ଯଦି ସମ୍ପୂର୍ଣ୍ଣ ସମୟ ହେବା ଆଗରୁ ତା'ର ନିଦ ଭାଙ୍ଗିଯାଏ ତେବେ ତା'ର ଶକ୍ତି କ୍ଷୟ ହୁଏ।

ତା'ର ସମୟ ହେବା ପୂର୍ବରୁ ତାକୁ ଉଠା ହୋଇ ସମସ୍ତ ଖବର କୁହାଗଲା। ସେ ମଧ୍ୟ ରାବଣଙ୍କୁ ବୁଝାଇଲା ସୀତାଙ୍କୁ ଫେରାଇ ଦେବା ପାଇଁ। ସେଥିରେ ରାବଣ ରାଗିକରି କହିଲା, "ବୀର ପରି ଯୁଦ୍ଧଭୂମିରେ ଶତ୍ରୁ ସହିତ ଯୁଦ୍ଧକର ନହେଲେ ଖାଇ ଶୋଇଯାଅ ଭୀରୁମାନଙ୍କ ପରି।"

କୁମ୍ଭକର୍ଣ୍ଣ ଆଗରୁହିଁ ରାଗିକରି ଥିଲା। ତେଣୁ ରାବଣ କଥାରେ ଆହୁରି ରାଗିଯାଇ ଯୁଦ୍ଧ କ୍ଷେତ୍ରକୁ ଗଲା ଓ ବାନରମାନଙ୍କୁ ଧରି ଗୋଟା ଗୋଟା ଗିଳିଲା। ଅବଶେଷରେ ରାମଙ୍କ ସହ ଯୁଦ୍ଧ କରୁ କରୁ ରାମଙ୍କ ବାଣରେ ପ୍ରାଣତ୍ୟାଗ କଲା।

ତା'ପରେ ଅନେକ ରାକ୍ଷସ ବୀର ଜଣକ ପରେ ଜଣେ ଯୁଦ୍ଧଭୂମିରେ ପ୍ରାଣତ୍ୟାଗ କଲେ। ଅବଶେଷରେ ରାବଣ ପୁତ୍ର ଇନ୍ଦ୍ରଜିତ କ୍ରୋଧରେ ଗର୍ଜ୍ଜନ କରି କରି ରଣକ୍ଷେତ୍ରକୁ ଆସିଲା। ଇନ୍ଦ୍ରଜିତର ଅସୀମ ସାହାସ ଓ ଅଲୌକିକ ଶକ୍ତି ଉପରେ ରାବଣର ଖୁବ୍ ବିଶ୍ୱାସ ଥିଲା। ଥରେ ସେ ଇନ୍ଦ୍ରଙ୍କୁ ଯୁଦ୍ଧରେ ହରାଇଥିଲା ବୋଲି ତା'ର ନାମ ଇନ୍ଦ୍ରଜିତ ହୋଇଛି। ସେ ମେଘମାଳା ମଧ୍ୟରେ ଲୁଚି ବଜ୍ର ଭଳି ଗର୍ଜ୍ଜନ କରିପାରେ ବୋଲି ତା'ର ଅନ୍ୟ ନାମ ମେଘନାଦ। ସେ ମନ୍ତ୍ରତନ୍ତ୍ରରେ ପୂର୍ଣ୍ଣ ମାୟା-ଯୁଦ୍ଧ କରିବାରେ ପାରଙ୍ଗମ ଥିଲା ଓ ରାଜନୀତିରେ ମଧ୍ୟ ବିଜ୍ଞ ଥିଲା। ଏତଦ୍‌ବ୍ୟତୀତ ତା'ର ଜାତକରେ ଥିଲା ଯେ ଯେଉଁ ବ୍ୟକ୍ତି ଚଉଦବର୍ଷ କାଳ ଆହାର ନିଦ୍ରା ତ୍ୟାଗ କରି ବ୍ରହ୍ମଚର୍ଯ୍ୟ ପାଳନ କରିଥିବ ସେହିଁ ତାକୁ ମାରି ପାରିବ। ଏପରି ବ୍ୟକ୍ତିର କଳ୍ପନା ମଧ୍ୟ ଅସମ୍ଭବ ମନେହୁଏ; ସେଥିପାଇଁ ରାବଣ ନିର୍ଭୟ ଥାଏ ଓ ଭାବୁଥାଏ କେବଳ ଇନ୍ଦ୍ରଜିତହିଁ ରାମଲକ୍ଷ୍ମଣ ଓ ତାଙ୍କ ସେନାମାନଙ୍କୁ ସହଜରେ ନିପାତ କରିଦେଇ ପାରିବ।

ଇନ୍ଦ୍ରଜିତ ଯୁଦ୍ଧ କ୍ଷେତ୍ରକୁ ଆସିବା ମାତ୍ରେ ମାୟାଯୁଦ୍ଧ ଆରମ୍ଭ କଲା। ସେ ଏକ



ମାୟାସୀତା ବନାଇ ସମସ୍ତିଙ୍କ ସମ୍ମୁଖରେ ତାକୁ ଟିକି ଟିକି କରି କାଟି ପକାଇଲା । ବିଭୀଷଣ ସବୁ ରାମଙ୍କୁ କହି ଦେଉଥା'ନ୍ତି ଓ ସବୁ ମଧ୍ୟରେ ଅବିଚଳିତ ହୋଇ ରହିବାକୁ ବୁଝାଉଥା'ନ୍ତି । ଇନ୍ଦ୍ରଜିତ ସହିତ ରାମଲକ୍ଷ୍ମଣଙ୍କର ଘୋର ଯୁଦ୍ଧ ହେଲା ।

ଇତମଧ୍ୟରେ ରାବଣ ବିଦ୍ୟୁଜିହ୍ୱ ରାକ୍ଷସର ସାହାଯ୍ୟରେ ମାୟାରେ ରାମଙ୍କର ଏକ ମଥା ତିଆରି କରି ଗୋଟାଏ ବର୍ଚ୍ଛାରେ ବିଦ୍ଧ କରାଇ ନେଇ ସୀତାଙ୍କୁ ଦେଖାଇଲା ।

କିନ୍ତୁ ସୀତା ତତ୍କ୍ଷଣାତ୍ ଏସବୁ ବୁଝିନେଲେ ଓ କ୍ରୋଧରେ କହିଲେ, "ତମମାନଙ୍କର ମାୟା ମୁଁ ଜାଣିଛି । ଦେଖ ଅଳ୍ପ ସମୟ ମଧ୍ୟରେ ରାବଣର ଦଶମୁଣ୍ଡ ଭୂଇଁରେ ଲୋଟିବ ।"

ଇନ୍ଦ୍ରଜିତ ତା'ର ପ୍ରଧାନ ଅସ୍ତ୍ର ନାଗପାଶ ଦ୍ୱାରା ରାମଲକ୍ଷ୍ମଣଙ୍କୁ ବାନ୍ଧି ପକାଇଲା । ରାମ ଗରୁଡ଼ଙ୍କୁ ସ୍ମରଣ କରନ୍ତେ ଗରୁଡ଼ ଆସିବାରୁ ନାଗମାନେ ପାଶ ମୁକ୍ତ କରି ପଳାୟନ କଲେ । ଅବଶେଷରେ ଚଉଦବର୍ଷ ଆହାର ନିଦ୍ରା ବର୍ଜନ କରିଥିବା ଲକ୍ଷ୍ମଣହିଁ ତାକୁ ମାରିବାକୁ ସକ୍ଷମ ହେଲେ ।

ଇନ୍ଦ୍ରଜିତର ମୃତ୍ୟୁ ଖବର ପାଇ ରାବଣର ଶକ୍ତି କ୍ଷୀଣ ହୋଇଗଲା । ସେ ତେଣୁ ପାତାଳରେ ଥିବା ନିଜର ଭାଇ ମହୀରାବଣକୁ ସ୍ମରଣ କଲା । ସେ ଆସିବାରୁ ରାବଣ ନିଜର ଦୁଃଖ କାହାଣୀ ଶୁଣାଇଲା । ରାବଣର ଅନୁରୋଧରେ ସେ ନାନାଦି ମାୟା ରଚନା କରି ରାମ ଲକ୍ଷ୍ମଣଙ୍କୁ ଅଚେତ କରାଇ ବାନ୍ଧି ଦେଇ ପାତାଳପୁରକୁ ଗୁପ୍ତକରି ନେଇଗଲା ସେଠାରେ ପାତାଳ କାଳୀଙ୍କଠାରେ ବଳୀ ଦେବାପାଇଁ । ବଳୀଦେବା ପୂର୍ବରୁହିଁ ହନୁମାନ ସେଠାରେ ପହଞ୍ଚି ଦୁହିଁଙ୍କୁ ଉଦ୍ଧାର କଲେ । ସେଠାରେ ରାମଙ୍କର ମହୀରାବଣ ସହିତ ଘୋର ଯୁଦ୍ଧ ହେଲା ଓ ଶେଷରେ ସେ ଯୁଦ୍ଧ କରୁ କରୁ ପ୍ରାଣ ତ୍ୟାଗ କଲା । ତା'ର ମୃତ୍ୟୁ ପରେ ହନୁମାନଙ୍କ ସ୍ୱେଦରୁ ମଗରକନ୍ୟା ଗର୍ଭରୁ ଜାତ ମକରଧ୍ୱଜହିଁ ପାତାଳଲଙ୍କାର ରାଜା ହୋଇ ରହିଲେ ।



ମହୀରାବଣର ମୃତ୍ୟୁରେ ରାବଣ ବହୁତ ଭାଙ୍ଗି ପଡ଼ିଲା । ସେ ଅଧିକ ଶକ୍ତି ପାଇବା ପାଇଁ ଯଜ୍ଞ କରୁଥାଏ । ଯଜ୍ଞରେ ବିଘ୍ନ ଘଟାଇବା ପାଇଁ ଅଙ୍ଗଦ ଅଦୃଶ୍ୟ ହୋଇ ଯାଇଥାନ୍ତି । କୌଣସି ମତେ ସେ ଯଜ୍ଞରେ ବିଘ୍ନ ଘଟାଇଲେ ଓ ରାବଣ ଆଉ ଅଧିକ ମାୟାବୀ ରାକ୍ଷସୀ ଶକ୍ତି ପାଇପାରିଲା ନାହିଁ । ସେ କ୍ରୋଧବଶରେ ସିଧା ରଣକ୍ଷେତ୍ରକୁ ଯିବାକୁ ବାହାରିଲା । ତା' ପୂର୍ବରୁହିଁ ମନ୍ଦୋଦରୀ ପୁଣି ତାଙ୍କୁ ବୁଝାଇ କହିଲା, "ସ୍ୱାମୀ, ଏବେ ମଧ୍ୟ ସମୟ ଅଛି, ସୀତାଙ୍କୁ ନେଇ ତମେ ରାମଚନ୍ଦ୍ରଙ୍କ ପାଖରେ ଶରଣ ନିଅ । ସେ ତୁମର ସକଳ ପାପ କ୍ଷମା କରିଦେବେ ।"

କିନ୍ତୁ ରାବଣ ସବୁଆଡ଼ୁ ହତାଶ ହୋଇ ମଧ୍ୟ ନିଜ କଥାରେ ଅଟଳ ରହିଲା ଓ କହିଲା, "ସୂର୍ଯ୍ୟ ଓ ଚନ୍ଦ୍ରଙ୍କର ଗତି ଭୁଲ୍ ହୋଇପାରେ ମାତ୍ର ମୋ କଥା କେବେ ଭିନ୍ନ ହୋଇ ନପାରେ ।" ସେ ରାଗିଗଲା ଓ ରଥ ଆରୋହଣ କରି ଯୁଦ୍ଧ କ୍ଷେତ୍ରକୁ ଗଲା ।

ପ୍ରଥମେ ତା'ର ରାଗ ପଡ଼ିଲା ଯାଇ ପୁତ୍ରହନ୍ତା ଲକ୍ଷ୍ମଣଙ୍କ ଉପରେ । ଥରେ ରାବଣ ଇନ୍ଦ୍ରଙ୍କୁ ଯୁଦ୍ଧରେ ପରାସ୍ତ କରି ବନ୍ଦୀ କରିଥିଲା । ମୁକ୍ତ ହେବାପାଇଁ ଇନ୍ଦ୍ର ତାକୁ ଏକ ମହାସ୍ତ୍ର ପ୍ରଦାନ କରିଥିଲେ । ସେହି ଅସ୍ତ୍ର ସେଦିନ ରାବଣ ଲକ୍ଷ୍ମଣଙ୍କ ଉପରକୁ ନିକ୍ଷେପ କଲା । ସେ ମହାଶକ୍ତିଶାଳୀ ଅସ୍ତ୍ରାଘାତରେ ଲକ୍ଷ୍ମଣ ମୂର୍ଚ୍ଛା ହୋଇ ପଡ଼ିଲେ । ସେଦିନ ରାମଙ୍କ ଶିବିରରେ ଅର୍ଦ୍ଧମୃତ ଲକ୍ଷ୍ମଣଙ୍କୁ ନେଇ ସମସ୍ତେ ବିଳାପ କରୁଥା'ନ୍ତି । ଦେବବୈଦ୍ୟ ସୁଷେଣ କହିଲେ ହିମାଳୟସ୍ଥ ଗନ୍ଧମାର୍ଦ୍ଦନ ପର୍ବତରେ ଥିବା ଔଷଧ କେହି ଆଣିପାରିଲେ ସେ ବଞ୍ଚିବେ । ସେଇ ରାତି ମଧ୍ୟରେ ହନୁମାନ ଯାଇ ସମଗ୍ର ଗନ୍ଧମାର୍ଦ୍ଦନ ଉପାଡ଼ି ଧରି ଆସିଲେ । ଲକ୍ଷ୍ମଣ ବଞ୍ଚିଗଲେ ଓ କ୍ରମେ ସୁସ୍ଥ ହେଲେ ।

ପରଦିନ ଯୁଦ୍ଧରେ ଇନ୍ଦ୍ର ରାମଙ୍କୁ ସାହାଯ୍ୟ କରିବା ପାଇଁ ଏକ ଦିବ୍ୟରଥ ପଠାଇଲେ । ରାମ ସେଥିରେ ବସି ଯୁଦ୍ଧ କଲେ । ରାମ ରାବଣ ଯୁଦ୍ଧ ଅତି ଭୟଙ୍କର ରୂପ ଧାରଣ କଲା । ରାମ ଯେତେ ଶରବୃଷ୍ଟି କଲେ ମଧ୍ୟ ରାବଣ ମରୁ

ନଥାଏ । ଶେଷରେ ବିଭୀଷଣ ରାମଙ୍କୁ କହିଲେ ଯେ ରାବଣର ନାଭିପଦ୍ମରେ ଏକ ଅମୃତ କଳସ ଅଛି ସେଥିପାଇଁ ସେ ମରୁନାହିଁ । ରାମ ତତ୍‌କ୍ଷଣାତ୍ ଏକ ବ୍ରହ୍ମାସ୍ତ୍ର ପ୍ରୟୋଗ କରି ସେହି ଅମୃତ କଳଶକୁ ନଷ୍ଟ କରିଦେଲେ । ପରେ ପରେ ରାବଣର ମୃତ୍ୟୁ ହେଲା । ରାବଣର ମୃତ୍ୟୁ ସହିତ ସାରା ରାକ୍ଷସ ସମାଜର ପତନ ହେଲା । ବିଭୀଷଣ ରାକ୍ଷସ କୁଳରେ ଜନ୍ମ ହେଲେ ମଧ୍ୟ ସେ ଦିବ୍ୟ ପ୍ରକୃତିର ବ୍ୟକ୍ତି ଥିଲେ । ଲଙ୍କାର ରାଜା ରୂପେ ତାଙ୍କୁ ରାମ ଅଭିଷେକ କରାଇଲେ ।

ଅଶୋକବନରୁ ସୀତାଙ୍କୁ ଆଣିବା ପରେ ରାମ ତାଙ୍କୁ କହିଲେ, "ରାବଣକୁ ମାରି ମୁଁ ରାଜାର କର୍ତ୍ତବ୍ୟ କରିଛି । କିନ୍ତୁ ତମେ ଯେ ଏତେଦିନ ରାବଣପୁରୀରେ ଥିଲ, ମୁଁ ତମକୁ ପୁଣି ଗ୍ରହଣ କଲେ ସମାଜରେ କଳଙ୍କ ରହିବ । ତେଣୁ ତୁମେ ସ୍ୱତନ୍ତ୍ର ଭାବରେ ଜୀବନ ଯାପନ କର ।"

ରାମଙ୍କର ବଚନ ସୀତାଙ୍କ ପାଇଁ ଥିଲା ବଜ୍ର ସଦୃଶ । ସେ ମର୍ମାହତ ହୋଇ ପଡ଼ିଲେ । ନିଜ ସତୀତ୍ୱର ପରାକାଷ୍ଠା ଦେଖାଇବା ପାଇଁ ସୀତା ଅଗ୍ନିରେ ପ୍ରବେଶ କରି ଅଗ୍ନିପରୀକ୍ଷା ଦେଲେ । ଅଗ୍ନିକୁଣ୍ଡ ମଧ୍ୟକୁ ସୀତା ପ୍ରବେଶ କରି ଅଦୃଶ୍ୟ ହୋଇଗଲେ । ପରେ ଅଗ୍ନିଦେବ ସୀତାଙ୍କୁ ଧରି ସ୍ୱୟଂ ପ୍ରକଟ ହୋଇ କହିଲେ, "ସୀତା ଅଗ୍ନି ପରି ପବିତ୍ର । ତାଙ୍କୁ ଗ୍ରହଣ କରନ୍ତୁ ।" ସେହି ସମୟରେ ଆକାଶରେ ଦଶରଥ ମଧ୍ୟ ପ୍ରକଟ ହୋଇ କହିଲେ, "ରାମ, ଅଗ୍ନି ପରୀକ୍ଷା ଦ୍ୱାରା ଜଣାଗଲା ସୀତା କେତେ ପବିତ୍ର । ଏବେ ତମେ ତାଙ୍କୁ ନିଃସଙ୍କୋଚରେ ଗ୍ରହଣ କରି ଅଯୋଧ୍ୟା ଫେରିଯାଅ । ସେଠାରେ ପ୍ରଜାମାନେ ତୁମରି ପ୍ରତୀକ୍ଷାରେ ଅଛନ୍ତି ।" ରାମ ଲକ୍ଷ୍ମଣ ଓ ସୀତା ପିତା ଦଶରଥଙ୍କୁ ପ୍ରଣାମ କଲେ । ପରେ ସମସ୍ତେ ପୁଷ୍ପକ ବିମାନରେ ବସି ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ କଲେ ।






# ପ୍ରତିଶୋଧ

ପାରସ୍ୟ ଦେଶରେ ତବରିସ୍ଥାନ ନାମକ ଏକ ଶ୍ରେଷ୍ଠ ରାଜ୍ୟ ଥାଏ । ସେଠାକାର ରାଜା ଥିଲେ ଦୁଷ୍ଟ ପ୍ରକୃତିର । ତାଙ୍କର ଥା'ନ୍ତି ଦୁଇଜଣ ଉଜୀର । ବଡ଼ ଉଜୀରଙ୍କର ଗୋଟିଏ ଖୁବ୍ ସୁନ୍ଦରୀ ଝିଅ ଥାଏ । ଦିନେ ରାଜାଙ୍କର ଦୃଷ୍ଟି ତା' ଉପରେ ପଡ଼ିଲା । ରାଜା ମୁଗ୍ଧ ହୋଇ ବଡ଼ ଉଜୀରଙ୍କୁ ଡାକି କହିଲେ, "ମୁଁ ତୁମ ଝିଅକୁ ବିବାହ କରିବାକୁ ଚାହେଁ । ସେ ତ ଏ ଦେଶର ରାଣୀ ହେବ । ତମର ମଧ୍ୟ ଭାଗ୍ୟ । ତମେ ମୋର ଶ୍ୱଶୁର ହୋଇଯିବ ।" ଶିଘ୍ର ସମସ୍ତ ଠିକ୍ କର ।"

ଏକଥା ଶୁଣି ଉଜୀର ଆଶ୍ଚର୍ଯ୍ୟ ହୋଇ କହିଲେ, "ହଜୁର ଆପଣଙ୍କ କଥା ଠିକ୍ । କିନ୍ତୁ ମୋର ଝିଅ ବିଦୁଷୀ, ବୁଦ୍ଧିମତୀ ଓ ଧାର୍ମିକ ସ୍ୱଭାବର । ମୁଁ ତାକୁ ନ ପଚାରି କିପରି ଆପଣଙ୍କୁ କଥା ଦେବି ?"

"ଠିକ୍ ଅଛି ତମେ ଏ ବିଷୟରେ ତା' ସହିତ ଆଲୋଚନା କରି ମୋତେ ଜଣାଅ । କିନ୍ତୁ ମୁଁ ଭାବୁଛି ଏକଥା ଶୁଣି ସେ ବହୁତ ଖୁସି ହୋଇଯିବ ।" ରାଜା କହିଲେ ।

କିନ୍ତୁ ଉଜୀରଙ୍କ ଝିଅ ପିତାଙ୍କଠାରୁ ଏ ଖବର ପାଇ ଦୁଃଖିତ ହୋଇ କହିଲେ, "ବାବା, ମୁଁ ରାଜାଙ୍କୁ ବିବାହ କରିବି ନାହିଁ । କାରଣ ଅନ୍ତଃପୁରବାସିନୀ ଅନ୍ୟାନ୍ୟ ରମଣୀଗଣଙ୍କ ପରି ସେ ମୋତେ ମଧ୍ୟ ଜଣେ ଦାସୀ ଭାବରେ ରଖିବେ । ସେ ପ୍ରକାର ଜୀବନରେ ତ କୌଣସି ସ୍ୱାଧିନତା ନାହିଁ । ମୁଁ ରାଜ୍ୟର ବୈଭବରେ ପ୍ରଲୁବ୍ଧ ହୋଇ ରାଣୀ ହେବାକୁ ଚାହେଁନାହିଁ । ଆପଣ ରାଜାଙ୍କୁ ଏକଥା ଜଣାଇ ଦିଅନ୍ତୁ ।"

ଉଜୀର ତାଙ୍କ ଝିଅର ମନୋଭାବ ବିଷୟରେ ରାଜାଙ୍କୁ କହିବା ମାତ୍ରେ ରାଜା

ଆରବ ଦେଶର କାହାଣୀ



ରାଗିଯାଇ କହିଲେ, "ସେ ନ ଚାହିଁଲେ ମୁଁ ବଳ ପ୍ରୟୋଗ କରି ତାକୁହିଁ ବିବାହ କରିବି।"

ରାଜାଙ୍କ ସହିତ ଶତ୍ରୁତା କରି ସେଠାରେ ରହିବା ଆଉ ସମ୍ଭବ ନୁହେଁ ଭାବି ଉଜୀର ଠିକ୍ କଲେ ଝିଅକୁ ନେଇ ଗୋପନରେ ଅନ୍ୟ ରାଜ୍ୟକୁ ଚାଲିଯିବେ । କିନ୍ତୁ ଭାଗ୍ୟର ନିଷ୍ଠୁର ପରିହାସ । ଝିଅ ସହିତ ଚାଲିଯାଉଥିବା ବେଳେ ସେ ଧରା ପଡ଼ିଲେ । ରାଜା ଉଜୀରଙ୍କୁ ପ୍ରାଣଦଣ୍ଡ ଦେଲେ ଓ ଝିଅକୁ ନେଇ ନିଜ ଅନ୍ତଃପୁରରେ ରଖିଲେ । ରାଜା ସେ ଝିଅକୁ କହିଲେ, "ତମେ ନା ମୋର ସାଧୁ ପ୍ରସ୍ତାବ ଉପରେ ପଦାଘାତ କରିଥିଲ । ଏବେ ଦେଖିବି ତୁମକୁ କିଏ ରକ୍ଷା କରିବ ।"

ସଙ୍ଗେ ସଙ୍ଗେ ଝିଅଟି ସାହାସର ସହିତ ଉତ୍ତର ଦେଲା, "ଅସହାୟଙ୍କୁ ଭଗବାନହିଁ ରକ୍ଷା କରନ୍ତି ।" ପରଦିନହିଁ ରାଜା ଖବର ପାଇଲେ କି ରାଜ୍ୟର ସୀମା ଅଞ୍ଚଳରେ ବିଦ୍ରୋହ ଦେଖା ଦେଇଛି । ଏହି ଝିଅର ଦାୟିତ୍ୱ ସାନ ଉଜୀରଙ୍କୁ ଦେଇ ରାଜା ବିଦ୍ରୋହ ଦମନ କରିବାକୁ ଚାଲିଗଲେ ।

ଝିଅଟିକୁ ଅନ୍ତଃପୁରର ଏକ ଛୋଟ କକ୍ଷରେ ବନ୍ଦୀ କରି ରଖା ଯାଇଥାଏ । ସାନ ଉଜୀର ତାକୁ ଦେଖିବାକୁ ଯାଇ ତା'ର ରୂପରେ ମୁଗ୍ଧ ହେଲେ । ତାଙ୍କର ଏକ ବିଶ୍ୱାସୀ ଦାସୀ ଯାଇ ଝିଅଟିକୁ କହିଲା, "ଛୋଟ ଉଜୀର ଆପଣଙ୍କୁ ପାଇବାକୁ ଇଚ୍ଛା କରୁଛନ୍ତି । ନିକଟରେ ଏକ ସୁନ୍ଦର ଉଦ୍ୟାନ ଅଛି । ଆପଣ ଚାହିଁଲେ ସେଠାକୁ କିଛି ସମୟ ପାଇଁ ବିହାର କରିବାକୁ ଯାଇ ପାରନ୍ତି । ବିଶ୍ୱାସ କରନ୍ତୁ ଏକଥା କେହି ମଧ୍ୟ ଜାଣିପାରିବେ ନାହିଁ ।"

"ପିତାଙ୍କ ମୃତ୍ୟୁ ପରେ ମୁଁ ଯେଉଁ ମାନସିକ ଅବସ୍ଥାରେ ଅଛି, ସେଥିରେ ଉଦ୍ୟାନ ବିହାର ପାଇଁ କି ଏଇଟା ସମୟ ? ମୋର ଏଇ ସଙ୍କଟମୟ ପରିସ୍ଥିତିରେ ବିଳାସବ୍ୟସନ କଥା ତମେ କହୁଛ ? କି ଲଜ୍ଜାର କଥା । ତୁମେ ତୁମର ମାଲିକଙ୍କୁ କହିଦିଅ ଯେପରି ଏଭଳି ପ୍ରସ୍ତାବ ସେ ଆଉ ନ ନିଅନ୍ତି ।" ଦୁଃଖ ଓ କ୍ରୋଧରେ ଏତିକି କହି ଉଜୀର କନ୍ୟା ଦାସୀକୁ ଲେଉଟାଇ ଦେଲା ।



ଶ୍ରେଷ୍ଠ ଉଜୀର ଦାସୀଠାରୁ ସବୁ କଥା ଶୁଣି ଡରିଗଲେ । ସେ ଭାବିଲେ, "ଏକଥା ଯଦି ରାଜାଙ୍କ କାନକୁ ଯାଏ ତ ପ୍ରାଣଦଣ୍ଡ ସୁନିଶ୍ଚିତ ।"

ବିଦ୍ରୋହ ଦମନ କରି ରାଜା ରାଜଧାନୀକୁ ଫେରିହିଁ ଶ୍ରେଷ୍ଠ ଉଜୀରଙ୍କ ପାଖରୁ କନ୍ୟାର ସବୁ ଖବର ବୁଝିଲେ । ଶ୍ରେଷ୍ଠ ଉଜୀର କହିଲେ, "ହଜୁର୍, ସେ ଆପଣଙ୍କ ପତ୍ନୀ ହେବାପାଇଁ ଯୋଗ୍ୟ ନୁହେଁ । ସେ ଗୋପନରେ ଜଣେ ଦାସୀ ହାତରେ ଖବର ପଠାଇଥିଲା ଯେ ମୁଁ ଯେପରି ତାକୁ ବାହା ହୋଇ ରାଜ୍ୟ ଛାଡ଼ି ଚାଲିଯାଏ ।"

ରାଜା ଏକଥା ଶୁଣି ଖୁବ୍ ରାଗିଯାଇ କହିଲେ, "ତେବେ ତ ମନେହେଉଛି ଝିଅଟା ଦୁଷ୍ଟ ଓ ଚରିତ୍ରହୀନ । ତାର ମୁଣ୍ଡ କାଟ କର ନଚେତ୍ ଜୀବନ୍ତ ସମାଧି ଦେଇଦିଅ ।"

ଉଜୀର କିଛି କହିବା ପୂର୍ବରୁ ଜଣେ ବୃଦ୍ଧ ଚାକର ଆସି କହିଲା, "ହଜୁର୍ ଏପରି ଭାବରେ ମାରିବାର କିଛି ଆବଶ୍ୟକତା ନାହିଁ । ମୋ ମତରେ ତାକୁ ଏକ ମରୁଭୂମିରେ ଛାଡ଼ି ଦିଆଯାଉ ସେଠାରେ ପାଣି ନ ପାଇ ଶୁଖି ଶୁଖି ମରିଯିବ ।"

ବୁଢ଼ା ଚାକରର କଥା ରାଜାଙ୍କ ମନକୁ ଖୁବ୍ ପାଇଲା । ସେ ତାକୁ ଏକ ମରୁଭୂମି ଅଞ୍ଚଳକୁ ପଠାଇ ଦେଲେ ଯେଉଁଠି ଦିଗନ୍ତବିସ୍ତାରି ଧୂ ଧୂ ବାଲି ଛଡ଼ା ଆଉ କିଛି ନଥିଲା ।

ସେପରି ଏକ ଭୀଷଣ ମରୁ ପ୍ରଦେଶରେ କୌଣସି ଆଶ୍ରା ନ ପାଇ ଝିଅଟି ଆକାଶ ଆଡ଼କୁ ଦୁଇହାତ ଟେକି ଭଗବାନଙ୍କୁ ଡ଼ାକିଲା । ଠିକ୍ ସେଇ ସମୟରେ ଦୂରରେ ଓଟ ଉପରେ ବସି ଯାଉଥିବା ଜଣେ ପଥିକ ଝିଅଟିକୁ ଦେଖି ପାରିଲା । ସେ ଗୋଟିଏ ସୁନ୍ଦର ଝିଅକୁ ଏପରି ଅସହାୟ ଅବସ୍ଥାରେ ଦେଖି ପାଖକୁ ଆସିଲା ଓ କହିଲା, "ଝିଅ, ତୁମପାଇଁ ଏ ସ୍ଥାନ ସୁରକ୍ଷିତ ନୁହେଁ । ଭୟ ନକରି ମୋ ସହିତ ମୋ ଘରକୁ ଚାଲ ।"

"ମୋତେ ମୋ ଭାଗ୍ୟ ସହ ଏଇଠିହିଁ ଛାଡ଼ିଯାଅ । ମୁଁ କୁଆଡ଼େ ଯିବାକୁ ଚାହୁଁନାହିଁ । ହଁ, ଯେଉଁଠି ମରୁଦ୍ୟାନଟିଏ ଥିଲେ ସେଇଠି



Anil Kumar

ଯଦି ଦୟାକରି ଛାଡ଼ିଦିଅନ୍ତି ମୁଁ ଟିକିଏ ପାଣି ପିଅନ୍ତି ।" ଝିଅଟି କହିଲା ।

ପକ୍ଷୀକଟି ତାକୁ ଏକ ସୁନ୍ଦର ମରୁଦ୍ୟାନ ପାଖରେ ଛାଡ଼ିଦେଲା । ପକ୍ଷୀକଟି ଥିଲା ପଡ଼ୋଶୀ ରାଜ୍ୟର ଯୁବରାଜଙ୍କର ଗୃଧ୍ର । ସେ ଫେରିଯାଇ ତା'ର ମାଲିକଙ୍କୁ ଏଇ ଝିଅଟି ବିଷୟରେ କହିଲା । ଯୁବରାଜ ତତ୍‌କ୍ଷଣାତ୍ ଗୃଧ୍ରର ସହିତ ସେହି ମରୁଦ୍ୟାନକୁ ଆସିଲେ ଓ ଝିଅଟି ସହିତ ଦେଖାକରି, ନିଜର ପରିଚୟ ଦେଇ କହିଲେ, "ମନେହୁଏ ଆପଣ କୌଣସି ଦେଶର ରାଜକୁମାରୀ । ଏହି ଭୟଙ୍କର ମରୁପ୍ରଦେଶକୁ କିପରି ଆପଣ ଏକଲା ଆସିଲେ ? ମୋ ସହିତ ରାଜ୍ୟକୁ ଆସି ମୋର ଆତିଥ୍ୟ ସ୍ୱୀକାର କରନ୍ତୁ । ପରେ ମୁଁ ଆପଣଙ୍କୁ ନିଜ ରାଜ୍ୟକୁ ପଠାଇ ଦେବି ।"

କିନ୍ତୁ ପ୍ରଥମେ ଉଜୀର କନ୍ୟା ଯୁବରାଜଙ୍କ କଥା ଶୁଣିଲେ ନାହିଁ । ସେହିଠାରେ ରହିବା ପାଇଁ ଜିଦ୍ କଲେ । ଯୁବରାଜ ନିରାଶ ହୋଇ ଫେରିଗଲେ । କିନ୍ତୁ ଅସହାୟ ଝିଅଟି କଥା ଭାବି ରାତରେ ତାଙ୍କର ନିଦ ହେଲାନାହିଁ । ସକାଳ ହେବା ମାତ୍ରେ ପୁଣି ସେ ସେହି ମରୁଦ୍ୟାନକୁ ଗଲେ ଓ ଗୋଟିଏ ଗଛ ତଳେ ବହୁ ସମୟ ଧରି ବସି ରହିଲେ ।

ଯୁବରାଜ ପୁଣି ଥରେ ଆସିବା ଦେଖି ସେ ନିକଟକୁ ଯାଇ କହିଲେ, "ଆପଣ ତ ଯୁବରାଜ, ଆପଣଙ୍କ ଉପରେ ରାଜକାର୍ଯ୍ୟର ଦାୟିତ୍ୱ ରହିଛି । ଆପଣ ଏଠି କାହିଁକି ବସି ରହିଛନ୍ତି । ରାଜ୍ୟକୁ ଫେରିଯାଇ ରାଜକାର୍ଯ୍ୟ ବୁଝାଶୁଝା କରନ୍ତୁ ।"

"କିନ୍ତୁ ଆପଣ ଯେ ପର୍ଯ୍ୟନ୍ତ ମୋ ସହିତ ନ ଯାଇଛନ୍ତି ବା ମୋତେ ସ୍ୱୀକାର କରିବା ପାଇଁ ଇଚ୍ଛା ପ୍ରକାଶ ନ କରିଛନ୍ତି ସେତେଦିନ ପର୍ଯ୍ୟନ୍ତ ମୁଁ ଏଇଠାରେହିଁ ରହିଥିବି ।" ଯୁବରାଜ କହିଲେ ।

ଯୁବରାଜଙ୍କର ସହାନୁଭୂତି ଓ ପ୍ରେମ ଦେଖି ଝିଅଟିର ଆଖିରୁ ଅଶ୍ରୁ ଝରି ପଡ଼ିଲା । ସେ ତାର ଦୁଃଖର କାହାଣୀ ଶୁଣାଇଲା ଓ କହିଲା, "ସାରା ଜୀବନ ଧରି ମୋ ପିତା